କଳିଙ୍ଗ-ଭାରତୀ ଗ୍ରନ୍ଥମାଳା ଦ୍ୱିତୀୟ ଖଣ୍ଡ

# ଗୀତ କଳ୍ପତରୁ

( ପ୍ରଥମ ଶାଖା )

# ଗୌରଚରଣ ଗୀତାବଳୀ

( ପ୍ରଥମ ଭାଗ )

Gauracarana Adhikari

ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କଦ୍ୱାରା
ସଂଗୃହୀତ

କଳିଙ୍ଗ-ଭାରତୀ ପ୍ରତିଷ୍ଠାତା
ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏ. ବି. ଏଲ.ଙ୍କ ଦ୍ୱାରା
ସଂଶୋଧିତ ଓ ସମ୍ପାଦିତ

ମୂଲ୍ୟ—ଦୁଇ ଟଙ୍କା ଆଠଅଣା

ନୂତନ ମୂଲ୍ୟ ପଚିଶ ପଇସା

# ମୁଖବନ୍ଧ

ଶ୍ରୀକୃଷ୍ଣାର୍ପଣମସ୍ତୁ

ସର୍ବଲୋକ ମହେଶ୍ୱର ପରମକାରୁଣିକ ମହାପ୍ରଭୁ ଶ୍ରୀକୃଷ୍ଣଙ୍କ ଅପାର କରୁଣାରୁ ଆଜି କଳିଙ୍ଗଭାରତୀ ଅନୁଷ୍ଠାନ ପକ୍ଷରୁ ଛପାଯୁ ଅନନ୍ୟଭକ୍ତ ଉତ୍କଳର ଅନ୍ୟତମ ବିସ୍ମୃତ କବି ଗୌରଚରଣ

ଅଧିକାରୀଙ୍କ ଗୀତାବଳୀ ଗୀତ-

ଗୀତକଳ୍ପତରୁ ପରିଚୟ କଳ୍ପତରୁ ଗ୍ରନ୍ଥର ପ୍ରଥମ ଶାଖା

ରୂପେ ପ୍ରକାଶ କରିବାକୁ ମୁଁ

କ୍ଷମ ହୋଇଅଛି । ଏହା ଏକାଧିକ ଖଣ୍ଡରେ ସମାପ୍ତ ହେବ । କବିଙ୍କ ଅମୂଲ୍ୟ କବିତାବଳୀର ବ୍ୟାପକ ସଂଗ୍ରହ ନିମନ୍ତେ ପୂଜ୍ୟପାଦ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସ ମହୋଦୟଙ୍କୁ ସର୍ବାଦୌ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି । ଆଶୁ ପ୍ରକାଶ କାମନା କରି ସେ ଏହାକୁ ବହୁଦିନ ହେଲା କଳିଙ୍ଗଭାରତୀ ଅନୁଷ୍ଠାନକୁ ସମର୍ପଣ କରିଥିଲେ । ରାଷ୍ଟ୍ରଭାଷା ପ୍ରଚାର ପ୍ରେସ୍‌ର ଶ୍ରଦ୍ଧେୟ ଅଧ୍ୟକ୍ଷ ସ୍ୱତଃ ପ୍ରବୃତ୍ତ ହୋଇ ଏଥିର ପ୍ରକାଶ ଭାର ଗ୍ରହଣ କରି ଧନ୍ୟବାଦାର୍ହ ହୋଇଅଛନ୍ତି । କଳିଙ୍ଗର ଭାବପ୍ରିୟ ସର୍ବଜନପ୍ରିୟ ଗୀତ ଓ

ସଙ୍ଗୀତକୁ ଏକତ୍ର କରି ବହୁଖଣ୍ଡ ବିଶିଷ୍ଟ ଗୀତକଳ୍ପତରୁ ଗ୍ରନ୍ଥ ପ୍ରକାଶ କରିବାକୁ ମୁଁ ମନସ୍ଥ କରିଅଛି । ସ୍ୱର୍ଗୀୟ ଦାମୋଦର ପଟ୍ଟନାୟକ ମହୋଦୟ ସାତଖଣ୍ଡ ବିଶିଷ୍ଟ ସଙ୍ଗୀତ ସାଗର ନାମକ ଗ୍ରନ୍ଥ ପ୍ରକାଶ କରି ଏ ଦିଗରେ ଅଗ୍ରଣୀ ହୋଇଥିଲେ । କିନ୍ତୁ ଦେଶର ଦୁର୍ଭାଗ୍ୟକୁ ସେ ଗ୍ରନ୍ଥର କେହି ପୁନର୍ମୁଦ୍ରଣ କଲେ ନାହିଁ । ତାହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ସଂଗ୍ରହ ହିସାବରେ ତାହା ଧାରାବାହିକ ବା ପୂର୍ଣ୍ଣାଙ୍ଗ ଥିଲା ବୋଲି କୁହାଯାଇ ପାରିବ ନାହିଁ । ତାଙ୍କର ସାତଖଣ୍ଡଯାକ ପୁସ୍ତକକୁ ମିଶାଇଲେ ତାହା ଏକା ଗୌରଚରଣଙ୍କ ଗୀତାବଳୀ ପୁସ୍ତକର ସମାନ ହେବ କି ନାହିଁ ସନ୍ଦେହ । ତଥାଚ ଦାମୋଦର ପଟ୍ଟନାୟକ ମହୋଦୟ ସେ ଯୁଗରେ କଳିଙ୍ଗର ସଙ୍ଗୀତ ବିଭବକୁ ବିସ୍ମୃତି କବଳରୁ ରକ୍ଷା କରିବା ନିମନ୍ତେ ଯେଉଁ ପ୍ରାରମ୍ଭିକ ଉଦ୍ୟମ କରିଥିଲେ ସେଥି ନିମନ୍ତେ ଅକୁଣ୍ଠିତ ଚିତ୍ତରେ ତାଙ୍କୁ ସାଧୁବାଦ ପ୍ରଦାନ କରିବା ଆମ୍ଭ ଏ ଯୁଗ ଲୋକଙ୍କର କର୍ତ୍ତବ୍ୟ ।

**ଗୀତ ବିଭବ ପ୍ରତି ବିଦ୍ୱାନମାନଙ୍କ ଅବହେଳା**

କଳିଙ୍ଗର ସର୍ବଜନପ୍ରିୟ ଗୀତ ଓ ସଙ୍ଗୀତମାନଙ୍କ ଦୁର୍ଦ୍ଦଶା ଅବର୍ଣ୍ଣନୀୟ । ଅଶିକ୍ଷିତ ବ୍ୟବସାୟୀ ପ୍ରକାଶକମାନଙ୍କ ହାତରେ ପଡ଼ି ସେ ସବୁ ଅନେକ ସ୍ଥଳରେ ବିକଳାଙ୍ଗ ଓ କିଂଭୂତ କିମାକାର ହୋଇ ସାରିଲଣି । ଏ ଯୁଗର ବିଦ୍ୱାନମାନେ ଓଡ଼ିଆ ଜାତିର ଏ ଅମୂଲ୍ୟ ସମ୍ପଦ ପ୍ରତି ଏକାବେଳକେ ଉଦାସୀନ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାଚୀ ସମିତିର ସମ୍ପାଦକ ଥିବା ସମୟରେ ଚଉତିଶା ଗୀତମାନଙ୍କର ବ୍ୟାପକ ସଂଗ୍ରହ କରି ମୁଁ ପଞ୍ଚ ଭାଗ

ହିଷ୍ଟ୍ରି ନଉଭଶା ମଧୁଚନ୍ଦ୍ର ଗ୍ରନ୍ଥ ସମ୍ପାଦନ ଓ ପ୍ରକାଶ କରିଥିଲେ । ତା ପରେ ଏ ଦିଗରେ ଅନୁରୂପ ଉଦ୍ୟମ ହୋଇନାହିଁ । ଯେଉଁ ସବୁ ସଙ୍ଗୀତ ଦେଖି ଜାତି ଗର୍ବ କରିବାର କଥା ସେ ସବୁ ତାଳପତ୍ର ପୋଥିମାନଙ୍କରେ ଅବହେଳିତ ଅବସ୍ଥାରେ ପଡ଼ିଅଛି; ଅଥବା 'ସଙ୍ଗୀତ ପାଚିଲା କଦଳୀ', 'ସଙ୍ଗୀତ ଛେନାଗୁଡ଼' ପ୍ରଭୃତି ବାଜେ ବହିରେ ସ୍ଥାନ ପାଇ ତୁଚ୍ଛ ପଣ୍ୟରେ ପରିଣତ ହୋଇ ଅଛି । କଳିଙ୍ଗଘରଣି ଅନୁଷ୍ଠାନ ଏ ସବୁ ଅବହେଳିତ, ଲୁପ୍ତ ବା ଲୋପୋନ୍ମୁଖ ରତ୍ନରାଜିଙ୍କୁ ଆବିଷ୍କାର, ଉଦ୍ଧାର ଓ ମାର୍ଜ୍ଜନ କରି ଗୀତକଳ୍ପତରୁ ରୂପେ ଜାତି ହସ୍ତରେ ଅର୍ପଣ କରିବ ବୋଲି ବ୍ରତ ଗ୍ରହଣ କରିଅଛି । ଅୟମାରମ୍ଭ ଶୁଭାୟ ଭବତୁ । କାବ୍ୟ ସାହିତ୍ୟର ମଧ୍ୟ ଅନୁରୂପ ଦଶା । ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ମହୋଦୟ ପ୍ରାଚୀ ଉଦ୍ୟମ କରି ନ ଥିଲେ କଳିଙ୍ଗର ଖଣ୍ଡିଏ ହେଲେ କାବ୍ୟର ଶୁଦ୍ଧ ସଂସ୍କରଣ ଦେଖିବାକୁ ମିଳୁ ନ ଥାନ୍ତା ।

କବିଙ୍କ ପରିଚୟ

କବି ଗୌରଚରଣ ଅଧିକାରୀ ୧୮୧୪ ଖ୍ରୀଷ୍ଟାବ୍ଦ (୧୨୨୧ ସାଲ) ଭାଦ୍ରମାସ ରାଧାଷ୍ଟମୀ ଦିନ ପୁରୀଜିଲ୍ଲା ଖୋରଧା ସବ୍‌ଡିଭିଜନର ଲେହେଙ୍ଗ ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ମୁକୁନ୍ଦ ମିଶ୍ର । ମୁକୁନ୍ଦ ମିଶ୍ରଙ୍କ ଅବସ୍ଥା ଆଦୌ ସ୍ୱଚ୍ଛଳ ନ ଥିଲା । ତେଣୁ ପାଠଶାଳାଟିଏ କରି ଗୌରଚରଣଙ୍କୁ ପରିବାରର ଭରଣପୋଷଣ କରିବାକୁ ପଡ଼ୁଥିଲା । ତାଙ୍କ ଦୀକ୍ଷାଗୁରୁ ସଦାନନ୍ଦ ବ୍ରହ୍ମର୍ଷି ତାଙ୍କୁ ରଣପୁର ନିକଟବର୍ତ୍ତୀ ପୁରୁଣାବସ୍ତ ଗ୍ରାମରେ ଅବସ୍ଥିତ ନିଜ ମଠର ଅଧିକାରୀ ପଦ ପ୍ରଦାନ କରିଥିଲେ ଓ ତଦ୍ଦ୍ୱାରା ତାଙ୍କ ସାଂସାରିକ ଅବସ୍ଥାର ଉନ୍ନତି ଘଟିଥିଲା । ଗୌରଚରଣଙ୍କର ଖୁବ୍ କମ୍ ବୟସରୁ କବିଶକ୍ତିର

ସ୍ଫୁରଣ ହୋଇଥିଲା । ସେ ମହାପ୍ରଭୁ କୃଷ୍ଣଚନ୍ଦ୍ର ଓ ଚୈତନ୍ୟଚନ୍ଦ୍ରଙ୍କ ସମ୍ବନ୍ଧୀୟ ନାନା ଗୀତ ରଚନା କରି ପାଠଶାଳାର ଛାତ୍ରମାନଙ୍କୁ ଶିଖାଉଥିଲେ । ପୂର୍ଣ୍ଣାବସ୍ଥ ମଠର ଅଧିକାରୀ ହେବାପରେ ସେ କୃଷ୍ଣଲୀଳା ଗ୍ରନ୍ଥ ରଚନା କରି କୃଷ୍ଣଲୀଳା ଯାତ୍ରା ଅନୁଷ୍ଠାନ କରିଥିଲେ । ସେ ଓଡ଼ିଆ ବଙ୍ଗଳା ମିଶା ସଂକୀର୍ତ୍ତନ ପଦାବଳୀ ରଚନା କରି କୀର୍ତ୍ତନିଆମାନଙ୍କୁ ଦେଉଥିଲେ ଏବଂ ତଦ୍ଦ୍ୱାରା ତାଙ୍କର ଖ୍ୟାତି କ୍ରମଶଃ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଥିଲା । ଏହାଛଡ଼ା ତାଙ୍କ ରଚିତ ସଙ୍ଗୀତ, ଜଣାଣ, ଭଜନ, ବୋଲି ଓ ଚଉତିଶା ପ୍ରଭୃତି ଗୀତ ଘରେ ଘରେ ଗୀତ ହେବାରେ ଲାଗିଲା । କବି ଛଡ଼ା ଜଣେ ଉଚ୍ଚକୋଟୀର ଭକ୍ତ ଓ ସାଧକରୂପେ ସେ ପୂଜିତ ହେଉଥିଲେ । ବିଭିନ୍ନ ଅଞ୍ଚଳର ବହୁସଂଖ୍ୟକ ଲୋକ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରି ତାଙ୍କୁ ଗୁରୁ କରିଥିଲେ । ସେ ୧୮୯୦ ଖ୍ରୀଷ୍ଟାବ୍ଦ (୧୨୯୭ ସାଲ) ମାର୍ଗଶୀର ମାସ କୃଷ୍ଣ ଏକାଦଶୀ ଦିନ ସୂର୍ଯ୍ୟୋଦୟ ସମୟରେ କୃଷ୍ଣ ନାମ ଉଚ୍ଚାରଣ କରୁ କରୁ ବ୍ରଜଧାମ ପ୍ରାପ୍ତ ହୋଇଥିଲେ । ସେ ଗୃହୀ ବୈଷ୍ଣବ ଥିଲେ । ତାଙ୍କ ପ୍ରତିଷ୍ଠିତ ଗୌର ନିତାଇ ବିଗ୍ରହ ଏବେ ସୁଦ୍ଧା ଲେହେଙ୍ଗରେ ତାଙ୍କ ବଂଶଧରମାନଙ୍କଦ୍ୱାରା ପୂଜିତ ହେଉଅଛନ୍ତି । କବିସୂର୍ଯ୍ୟ ବଳଦେବ ରଥ ୧୮୪୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓ କବି କଳହଂସ ଗୋପାଳକୃଷ୍ଣ ୧୮୬୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିଲେ । ଗୌରଚରଣ ଏ ଦୁହିଁଙ୍କ ସମସାମୟିକ । ଏ ଦୁହିଁଙ୍କ ପ୍ରଭାବ ତାଙ୍କ ଉପରେ କଥଞ୍ଚିତ ପଡ଼ିଥିଲେ ସୁଦ୍ଧା ରଚନା ଶୈଳୀର ସାରଲ୍ୟ ଓ ତାଙ୍କ ମୌଳିକତା ଯୋଗୁଁ କଳିଙ୍ଗ ସାହିତ୍ୟ କ୍ଷେତ୍ରରେ ତାଙ୍କ ସ୍ଥାନ ସ୍ୱତନ୍ତ୍ର ଓ ସୁପ୍ରତିଷ୍ଠିତ । ସେ ଓଡ଼ିଆମିଶା ବଙ୍ଗଳା ଓ ବ୍ରଜବୋଲି ଭାଷାରେ ଅନେକ ଗୀତ ଲେଖି ଅଛନ୍ତି । ତାଙ୍କ ରଚିତ "କୃଷ୍ଣଲୀଳା" ଗ୍ରନ୍ଥ

କଟକର ଏକାଧିକ ପ୍ରେସ ଗୁଡ଼ି ଅଛନ୍ତି । "ଗୌରହରି ଭଜନ ଶତକ" ବୋଲି ତାଙ୍କର ଖଣ୍ଡେ ଏ ଗୀତ ସଂଗ୍ରହ ତାଙ୍କ ପୁତ୍ର ବହୁ ବର୍ଷତଳେ ପ୍ରକାଶ କରିଥିଲେ । ତାହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ତାଙ୍କ ରଚିତ ଓଡ଼ିଆମିଶା ବଙ୍ଗଳାରେ ଲିଖିତ "ଅଦ୍ୱୈତ ମଙ୍ଗଳ" ପୁସ୍ତିକା ଦେଖିବାକୁ ମିଳୁ ଅଛି । "ଆଠରସ", "ପଞ୍ଚସ୍ତୁତି" "ପଶାଖେଳ", "ଚମତ୍କାର ଚନ୍ଦ୍ରିକା" ଓ "ଶରଦ୍ରାସ" ପ୍ରଭୃତି ତାଙ୍କ ରଚିତ ଅନ୍ୟାନ୍ୟ ପୁସ୍ତକ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନାହିଁ । ଏ ସଂଗ୍ରହରେ ତାଙ୍କ କୃଷ୍ଣଲୀଳାର କେତେକ ଗୀତ ମଧ୍ୟ ସ୍ଥାନ ପାଇଅଛି । ସେ ଶୁଦ୍ଧା ଭକ୍ତିମାର୍ଗର ସାଧକ ଥିଲେ ।

ଗୌରଚରଣ କଳିଙ୍ଗର ପରମ ଭାଗବତ କବିମାନଙ୍କ ମଧ୍ୟରେ ଅନ୍ୟତମ । ସରଳ, ତରଳ ଓ ସର୍ବଜନବୋଧ୍ୟ ଭାଷାରେ ଲିଖିତ ତାଙ୍କ ଜଣାଣ ଓ ଭଜନମାନ ସର୍ବତ୍ର ସମାଦୃତ ଓ ଗୀତ ହୋଇଥାଏ ।

ଗୌରଚରଣ, ଗୋପାଳକୃଷ୍ଣ
ଓ କବିସୂର୍ଯ୍ୟ

କିନ୍ତୁ ତାଙ୍କ ବିଷୟରେ ସବୁ ତଥ୍ୟ ପ୍ରାୟ ଅଜ୍ଞାତ । କବିସୂର୍ଯ୍ୟ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀ ପ୍ରକାଶିତ ହୋଇ ନ ଥିଲେ କବିସୂର୍ଯ୍ୟ ଓ କବି କଳହଂସଙ୍କର ମଧ୍ୟ ଅନୁରୂପ ଦଶା ହୋଇଥାନ୍ତା । ଏବେ ମଧ୍ୟ ଏମାନଙ୍କ ସମକକ୍ଷ ରାମକୃଷ୍ଣ ପଟ୍ଟନାୟକ, ଗୌରହରି ପରିଡ଼ା ପ୍ରଭୃତିଙ୍କ ପରି ଅନ୍ତତଃ ଶତ ସଂଖ୍ୟକ ସଙ୍ଗୀତ କବି ବିସ୍ମୃତି ଗର୍ଭରେ ସତ୍ୱ ଅଛନ୍ତି । ଆଜି କଳିଙ୍ଗର ପ୍ରସିଦ୍ଧ ବିସ୍ମୃତ ଭକ୍ତ କବି ଗୌରଚରଣ ଅଧିକାରୀଙ୍କ ପ୍ରତିଭାର ସମ୍ୟକ୍ ପରିଚୟ ଦେବାର ସୁଯୋଗ ଲାଭ କରି ମୁଁ ନିଜକୁ ସୌଭାଗ୍ୟବାନ ମନେ କରୁଅଛି । ଗୌରଚରଣ,

କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ବ୍ରିଟିଶ ରାଜତ୍ୱରେ ଜୀବିତ ଥିଲେ । ଗୌରଚରଣ ଯାଇ ଅଛନ୍ତି ସ୍ୱବା ପଛରେ ଅର୍ଥାତ୍ ୧୯୭୦ ଖ୍ରୀଷ୍ଟାବ୍ଦରେ; କିନ୍ତୁ ଜଡ଼ବାଦମୟ ବ୍ରିଟିଶ ସଭ୍ୟତାର ତଳାର୍ଦ୍ଧ ଯାହ ପ୍ରଭାବ ସେମାନଙ୍କ ଉପରେ ପଡ଼ିନାହିଁ । କଳିଙ୍ଗର ଆଧ୍ୟାତ୍ମ୍ୟ କୃଷ୍ଟିର ଏ ତିନିହେଁ ପ୍ରକୃଷ୍ଟ ପ୍ରତିନିଧି । ବ୍ରିଟିଶମାନଙ୍କ ପ୍ରତିଷ୍ଠିତ ବିଶ୍ୱ-ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ରାଧାନାଥ ରାୟ ଓ ତାଙ୍କ ଅନୁଗାମୀ କବିମାନେ କଳିଙ୍ଗ ସାହିତ୍ୟର ଆଭିମୁଖ୍ୟ ବଦଳାଇ ଦେଇ ଦେଶରେ ନୂଆ ହୋଇ ସର୍ଜନା ହୋଇଥିବା ଜଡ଼ବାଦମୟ ଆବେଷ୍ଟନୀର ଅନୁକୂଳ କାବ୍ୟ କବିତା ଲେଖି ଯାଇଅଛନ୍ତି । ଏ ଆବେଷ୍ଟନୀ ତିଷ୍ଠି ରହିଥିବା ପର୍ଯ୍ୟନ୍ତ ରାଧାନାଥ ଯୁଗର ଟେକ ରହିବା ଅନିବାର୍ଯ୍ୟ । ଦେଶର ବିରାଟ ଜନତାର ସଂଖ୍ୟା ବିଚାରରେ ନଗଣ୍ୟ ଅଥଚ ପ୍ରଭାବ ବିସ୍ତରରେ ଅଗ୍ରଗଣ୍ୟ ଅଂଶ ପାଶ୍ଚାତ୍ୟ ଖଣ୍ଡରୁ ଆଗତ ଜଡ଼ବାଦ ମୁହଁରେ ନିଜକୁ ସଁପି ଦେଇଥିବାପରି ଜଣାପଡ଼ୁଅଛି । ତେଣୁ ଅଧିକାଂଶ ବିଦ୍ୱାନଙ୍କର ଦେଶର ଆଧ୍ୟାତ୍ମ୍ୟ ପରମ୍ପରା ସମ୍ମତ ସାହିତ୍ୟ ପ୍ରତି ମାରାତ୍ମକ ଅବହେଳା । ନଚେତ୍ ଗୌରଚରଣ ଆଦିଙ୍କ ଭଳି ମହା ପ୍ରତିଭାଶାଳୀ କବିମାନଙ୍କର ଶିକ୍ଷିତଙ୍କ ନୟନଗୋଚର ହେବାକୁ ଏତେ କାଳ ଲାଗୁ ନ ଥାନ୍ତା ବା ସେଥିପାଇଁ କାହାକୁ ଏତେ ଆୟାସ ସ୍ୱୀକାର କରିବାକୁ ପଡ଼ୁ ନ ଥାନ୍ତା । ବ୍ରିଟିଶମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଶିକ୍ଷା ପଦ୍ଧତି ଏ ଦେଶର ସ୍ୱାଭାବିକ ପରିବେଶକୁ ବଦଳାଇ ଦେବାକୁ ଚେଷ୍ଟା କରିଅଛି । ଏହାକୁ ଦେଶର ଦୁର୍ଭାଗ୍ୟ ବୋଲି ଜ୍ଞାନ କରିବାକୁ ହେବ । ବ୍ରିଟିଶ ପ୍ରଭାବରୁ ମୁକ୍ତ ଏ ତିନି କବି ଦେଶ ପାଇଁ ଚିରକାଳକୁ ବିପୁଳ ଆଧ୍ୟାତ୍ମ୍ୟ ସମ୍ଭାର ସମ୍ପାଦି ଯାଇଅଛନ୍ତି । ଏକା ଗୌରଚରଣ ନୁହନ୍ତି, କବିସୂର୍ଯ୍ୟ ଓ କବିକଳହଂସ ମଧ୍ୟ

ଶୁଦ୍ଧା ଭକ୍ତିମାର୍ଗର ପଥିକ । କୃଷ୍ଣଭକ୍ତ ଜନଙ୍କ ହୃଦୟରେ ଉଦ୍‌ବେଳ ।

ଗୀତାପ୍ରୋକ୍ତ କାଳର କଳନା ଓ ଅବତାର ତତ୍ତ୍ୱ ଏ ଦେଶ ଲୋକଙ୍କ ଆଧ୍ୟାତ୍ମ୍ୟ ଜ୍ଞାନର ସର୍ବଶ୍ରେଷ୍ଠ ସାମଗ୍ରୀ ଥିଲା । ଆଜି ବ୍ରିଟିଶ ପ୍ରଭାବରେ ଶିକ୍ଷାଭିମାନୀମାନେ ତତ୍ପ୍ରତି ଆଦୌ ମନନଶୀଳ ନୋହୁଥିବାରୁ ସର୍ବଲୋକ ମହେଶ୍ୱର ଶ୍ରୀରାମ ବା ଶ୍ରୀକୃଷ୍ଣ ଲୀଳାକୁ ଉପଜୀବ୍ୟ କରି ଲିଖିତ ହୋଇଥିବା ସାହିତ୍ୟର ଯଥାର୍ଥ ଉପଯୋଗିତା ବା ଗୂଢ଼ ମର୍ମ ସେମାନେ ଆଦୌ ବୁଝୁନାହାନ୍ତି ଓ ତାକୁ ଜାତିର ଆଧୁନିକ ପ୍ରୟୋଜନ ପ୍ରତି ଅନୁପଯୋଗୀ ଓ ଅସାର ରଚନା ବୋଲି କହି ଅବହେଳା ଓ ଅବଜ୍ଞା କରୁଅଛନ୍ତି । ଇନ୍ଦ୍ରିୟ ତର୍ପଣ ପାଇଁ ତାବଣ୍ଟିସ୍ଥ ସମ୍ଭାରର ଅବାଧ ସଂଗ୍ରହକୁ ଜାତିର ଏକମାତ୍ର ପ୍ରୟୋଜନ ବୋଲି ସେମାନେ ଜ୍ଞାନ କରୁଅଛନ୍ତି ଓ ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଦତ୍ତ ଶିକ୍ଷା ସେମାନଙ୍କୁ କେବଳ ସେଥି-ପାଇଁ ଯୋଗ୍ୟ କରି ତିଆରି କରୁଅଛି । ବ୍ରିଟିଶ ପ୍ରଭାବ ବିବର୍ଜିତ କଳଙ୍ଗର ଜାତୀୟ ସାହିତ୍ୟକୁ ତାର ଗୌରବମୟ ତୁଙ୍ଗ ଆସନରେ ପୁନଃ ପ୍ରତିଷ୍ଠିତ କରିବାକୁ ହେଲେ ତହିଁର ମର୍ମୋଦ୍‌ଘାଟନ ସର୍ବାଦୌ ଆବଶ୍ୟକ ।

ଗୀତାର ଅଷ୍ଟମ ଅଧ୍ୟାୟରେ ଉକ୍ତ ହୋଇଅଛି—

ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍‌ ବ୍ରାହ୍ମଣୋ ବିଦୁଃ
ରାତ୍ରିଂ ଯୁଗସହସ୍ରାନ୍ତାଂ ତେଽହୋରାତ୍ରବିଦୋ ଜନାଃ ।

ଅର୍ଥାତ୍ ବ୍ରହ୍ମାଙ୍କର ଏକଦିନ ଏକହଜାର ଚତୁର୍ଯୁଗୀ ପରିମିତ ଏବଂ ବ୍ରହ୍ମାଙ୍କର ଏକରାତ୍ରି ମଧ୍ୟ ଏକହଜାର ଚତୁର୍ଯୁଗୀ ପରିମିତ । ଏ ତଥ୍ୟକୁ ଯେ ତତ୍ତ୍ୱତଃ ଜାଣନ୍ତି ସେ ଯୋଗୀପୁରୁଷ କାଳକୁ ତତ୍ତ୍ୱତଃ ଜାଣନ୍ତି ।

ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏ ଚାରିଯୁଗକୁ ଏକତ୍ରେ ଚତୁର୍ଯୁଗୀ କୁହାଯାଏ । ଗୋଟିଏ ଚତୁର୍ଯୁଗୀର ପରିମାଣ ୪୩୨୦,୦୦୦ ବର୍ଷ । (କଳିଯୁଗର ପରିମାଣ ୪୩୨୦୦୦ ବର୍ଷ, ଦ୍ୱାପରଯୁଗର ପରିମାଣ ୮୬୪୦୦୦ ବର୍ଷ, ତ୍ରେତାଯୁଗର ପରିମାଣ ୧୨୯୬୦୦୦ ବର୍ଷ ଓ ସତ୍ୟଯୁଗର ପରିମାଣ ୧୭୨୮୦୦୦ ବର୍ଷ) । ତେଣୁ ବ୍ରହ୍ମାଙ୍କ ଦିନକ ୪୩୨୦୦୦୦×୧୦୦୦=୪୩୨୦୦୦୦୦୦୦ ବର୍ଷ ଓ ବ୍ରହ୍ମାଙ୍କ ରାତିକ ୪୩୨୦୦୦୦×୧୦୦୦=୪୩୨୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ଅହୋରାତ୍ର ୮୬୪୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ବର୍ଷକ ୮୬୪୦୦୦୦୦୦୦×୩୬୦=୩୧୧୦୪୦୦୦୦୦୦୦୦ ବର୍ଷ । ବ୍ରହ୍ମାଙ୍କ ପରମାୟୁ ୧୦୦(ଦେବ)ବର୍ଷ=୩୧୧୦୪୦୦୦୦୦୦୦୦୦୦ ବର୍ଷ । ସୂର୍ଯ୍ୟ ସିଦ୍ଧାନ୍ତ ଓ ମନୁସ୍ମୃତିର ଗଣନାନୁସାରେ ବର୍ତ୍ତମାନ ବ୍ରହ୍ମାଙ୍କ ପରମାୟୁର ୫୧ ବର୍ଷର ପ୍ରଥମ ଦିନ । ତେଣୁ ସତ୍ୟ,ତ୍ରେତା, ଦ୍ୱାପର ଓ କଳି ବା ଚତୁର୍ଯୁଗୀ ଏ ପର୍ଯ୍ୟନ୍ତ କେତେ କେତେବାର ଗତ ହେଲାଣି ଓ କେତେ କେତେବାର ହେବାକୁ ଅଛି ହିସାବ କରି ଦେଖିବାର କଥା । ସାଧୁମାନଙ୍କୁ ପରିତ୍ରାଣ କରିବାକୁ ଦୁଷ୍କୃତମାନଙ୍କୁ ବିନାଶ କରିବାକୁ ଓ ଧର୍ମକୁ ସଂସ୍ଥାପନ କରିବାକୁ ସର୍ବଲୋକ ମହେଶ୍ୱର ମହାପ୍ରଭୁ ତ୍ରେତାରେ ଶ୍ରୀରାମ ଓ ଦ୍ୱାପରରେ ଶ୍ରୀକୃଷ୍ଣ ରୂପରେ ଅବତୀର୍ଣ୍ଣ ହୁଅନ୍ତି ଓ କଳିରେ କଳିପାବନ ଅବତାର ଶ୍ରୀ ଚୈତନ୍ୟରୂପେ ଆବିର୍ଭାବ ହୁଅନ୍ତି ; ଏହା ନିରବଚ୍ଛିନ୍ନ ନିତ୍ୟ ସନାତନ ପରମ୍ପରାରୂପେ ଚାଲି ଆସିଅଛି ଓ ଚାଲିଥିବ । ଏ ତଥ୍ୟ ଓଡ଼ିଆ ଜାତିକୁ ଜଣାଥିଲା ଏବଂ ଜଗନ୍ନାଥଙ୍କ ଭଜନ ସ୍ମରଣ ପାଦସେବନ ଆଦିକୁ ମୁକ୍ତିର ଏକମାତ୍ର ସୋପାନ ବୋଲି ଓଡ଼ିଆ ଜାତି ବୁଝିଥିଲା । ବ୍ରିଟିଶ ପ୍ରଭାବ ବିବର୍ଜିତ ଓଡ଼ିଆ ଜାତୀୟ ସାହିତ୍ୟର କଳାକାରମାନେ ଏଥିଯୋଗୁଁ ଶ୍ରୀରାମ, ଶ୍ରୀକୃଷ୍ଣ

ଓ ଶ୍ରୀଚୈତନ୍ୟଙ୍କ ଲୀଳାକୁ ସେମାନଙ୍କ ପ୍ରତିଭାର ସର୍ବୋତ୍କୃଷ୍ଟ ବନକ ଦେଇ ଚଷ କରୁଥିଲେ । ଏ ସ୍ୱଭାବରେ ବ ଲ୍ମୀକ ଓ ବ୍ୟାସଙ୍କ ପଛକୁ ସେମାନେ ଜାତିର ଗୁରୁ ଏବଂ ସର୍ବକାଳକୁ ନମସ୍ୟ ଓ ପୂଜ୍ୟ ।

ଦେଶରେ ବ୍ରିଟିଶ ଶାସନ ସ୍ଥାପିତ ହୋଇ ଜଡ଼ବାଦର କ୍ରମିକ ପ୍ରସାର ହେଉଥିଲାବେଳେ ଗୌରଚରଣ, ଗୋପାଳକୃଷ୍ଣ ଓ ବଳଦେବ ଜୀବିତ ଥିଲେ; କିନ୍ତୁ ଦେଶର ସାହିତ୍ୟର ଅଙ୍ଗୀଭୂତ କରିବାକୁ ଜଡ଼ବାଦୀ ବ୍ରିଟିଶ ଜାତିଠାରୁ ଯେ କିଛି ଶିଖିବାର ଅଛି ତାହା ସେମାନେ ସ୍ୱୀକାର କରି ନ ଥିଲେ । ତେଣୁ ସେମାନଙ୍କର କବିତା ଆଧ୍ୟାତ୍ମିକ ପରମ୍ପରା ସମ୍ମତ ଜାତୀୟ ସରଣୀରେହିଁ ଗତି କରିଅଛି । ସେମାନଙ୍କର ବିଶ୍ୱବିଦ୍ୟାଳୟ ଶିକ୍ଷା ଥିଲା ନାହିଁ ସତ୍ୟ; କିନ୍ତୁ ଇଚ୍ଛା ଥିଲେ ଫକୀରମୋହନ ସେନାପତିଙ୍କ ପରି ସେମାନେ ଇଂରେଜ ସାହିତ୍ୟର ଆସ୍ୱାଦ ଲାଭକରି ପାରିଥାନ୍ତେ । କବିମାନେ ଜାତିର ଗୁରୁ । ଇଂରେଜ କବି ଶେଲୀ ମଧ୍ୟ କହିଅଛନ୍ତି, କବିମାନେ ପରୋକ୍ଷରେ ଜଗତର ବ୍ୟବସ୍ଥାପକ "Unacknowledged Legislators"; ତେଣୁ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦେଶର ଗୁରୁମାନଙ୍କ ମନୋଭାବ ଜଡ଼ବାଦ ଆଡ଼କୁ ଯାହା ହେବାର କଥା ଏମାନଙ୍କ କ୍ଷେତ୍ରରେ ତାହାହିଁ ହୋଇଅଛି । ବୋଧହୁଏ ଗୌର-ଚରଣ ଅଧିକାଂଶହିଁ ରାଧାନାଥ ପୂର୍ବଯୁଗର ଶେଷ ଶ୍ରେଷ୍ଠ ପ୍ରତିନିଧି ।

ତିନି କବିଙ୍କ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥଙ୍କ ସଂସ୍କୃତ ଜ୍ଞାନ ସମଧିକ । କିଶୋରଚନ୍ଦ୍ରାନନ୍ଦ ଚମ୍ପୂରୁ ଜଣାପଡ଼େ ସେ ଯଦି ସଂସ୍କୃତରେ କବିତା ଲେଖିଥାନ୍ତେ, ତାହାହେଲେ ସଂସ୍କୃତ ସାହିତ୍ୟରେ ମଧ୍ୟ ସେ ଅତି ବିଶିଷ୍ଟ ସ୍ଥାନ ଅଧିକାର କରିଥାନ୍ତେ ।

ଅନୁପ୍ରାସ ସମ୍ବଳିତ ପଦ ଯୋଜନାରେ ସେ ଅଦ୍ୱିତୀୟ । ଏବର ସ୍ୱଳ୍ପ ଶିକ୍ଷିତ ଲୋକଙ୍କୁ ତାଙ୍କର ଅଧିକାଂଶ ଗୀତ ଦୁର୍ବୋଧ ହେଲେ ସୁଦ୍ଧା ସଙ୍ଗୀତର ମଧୁମୟ ମୂର୍ଚ୍ଛନାରେ ତାହା ଆପାମର ସାଧାରଣଙ୍କର ପରମପ୍ରିୟ ସାମଗ୍ରୀ । ତାଙ୍କ ସମୟରେ ଦେଶର ସାଧାରଣ ଲୋକେ ସୁଦ୍ଧା ଅମରକୋଷ ଅଭିଧାନ ମୁଖସ୍ଥ କରି କାବ୍ୟ କବିତାର ଅର୍ଥ ବୁଝୁଥିଲେ । ତେଣୁ ଲୋକଙ୍କ ଦୁର୍ବୋଧ କରି କବିସୂର୍ଯ୍ୟଙ୍କ ଭଳି ଜାଣିଥିବା କବି କବିତା ରଚନା କରୁଥିଲେ— ଏହା କହିବା ଅଜ୍ଞତା ମାତ୍ର । ସେ ଯୁଗରେ ବିଦ୍ୱତ୍ତାର ଯଥେଷ୍ଟ ପୂଜା ଓ ପ୍ରସାର ଥିଲା । ଏବର ଏ ପଲ୍ଲବଗ୍ରାହୀ ଯୁଗରେ ଲୋକେ ସରଳତାର ଦୋହାଇ ଦେଇ ଜ୍ଞାନର ଘନତାକୁ ଉପହାସ ଦେବାରେ ଅଭ୍ୟସ୍ତ ।

କବିସୂର୍ଯ୍ୟଙ୍କ ଅଗାଧ ପାଣ୍ଡିତ୍ୟ ଗୋପାଳକୃଷ୍ଣଙ୍କଠାରେ ନ ଥିଲା । ତାଙ୍କ ପ୍ରତିଭା ପ୍ରତି ଅକୁଣ୍ଠିତ ସମ୍ମାନ ଦେଖାଇବା ସଙ୍ଗେ ସଙ୍ଗେ ସ୍ୱୀକାର କରିବାକୁ ହେବ ଯେ କବିତାକୁ ଅଳଙ୍କାର ବିଭବରେ ମଣ୍ଡନ କରିବାର ଶକ୍ତିରେ ସେ କବିସୂର୍ଯ୍ୟଙ୍କଠାରୁ ଯଥେଷ୍ଟ ନ୍ୟୂନ; କିନ୍ତୁ ଭଗବତ୍ତନ୍ମୟତାର ସରଳ ଓ କମନୀୟ ଅଭିବ୍ୟକ୍ତିରୂପେ ତାଙ୍କ ପଦ୍ୟାବଳୀର ସାର୍ବଜନୀନ ସମାଦର । ଅଭିମନ୍ୟୁ ସାମନ୍ତସିଂହାରଙ୍କ ପରି ଗୋପାଳକୃଷ୍ଣ ଜଣେ ଭାବପ୍ରବଣ ପୁରୁଷ । ପ୍ରେମିକ ହୃଦୟ ଭାବକୁ ତନ୍ନତନ୍ନ କରି ବିଶ୍ଳେଷଣ କରି ନିପୁଣ ଭାବରେ ଚିତ୍ରିବାରେ ସେ ସିଦ୍ଧହସ୍ତ । ସଙ୍ଗୀତମୟତା ଯୋଗୁଁ କବିସୂର୍ଯ୍ୟଙ୍କ କବିତା ମନୋହର ହୋଇଥିବା ସ୍ଥଳେ ଭାବମୟତା ଯୋଗୁଁ ଗୋପାଳକୃଷ୍ଣଙ୍କ କବିତା ହୃଦୟସ୍ପର୍ଶୀ ।

ଗୌରଚରଣ ଗୋପାଳକୃଷ୍ଣଙ୍କ ସମକକ୍ଷ କବି । ସେ ମଧ୍ୟ ଗୋପାଳକୃଷ୍ଣଙ୍କ ଭଳି ଭାବପ୍ରବଣ । ଶ୍ରୀକୃଷ୍ଣ ଶ୍ରୀଗୌରାଙ୍ଗଙ୍କ ପ୍ରତି

ବା ଅନନ୍ୟ ଭକ୍ତ ତାଙ୍କ କବିତାମାନଙ୍କର ପ୍ରତି ପଂକ୍ତିରୁ ଉଚ୍ଛୁଳି ପଡ଼ୁଥିଲା ପରି ବୋଧହୁଏ । ପ୍ରେମିକ ହୃଦୟ ଭାବର ତନ୍ନତନ୍ନ ବିଶ୍ଳେଷଣ ଓ ବ୍ୟଞ୍ଜନାରେ ଭାବ ପ୍ରକାଶ ଯାହା କି ଗୋପାଳକୃଷ୍ଣଙ୍କ କବିତାରେ ଅତ୍ୟନ୍ତ ସୁଷ୍ଠୁଭାବରେ ପ୍ରକଟିତ, ତାହା ଗୌରଚରଣଙ୍କର ନାହିଁ । ଅଥଚ ପଲ୍ଲୀର ସାଧାରଣଙ୍କ ସରଳତରଳ ଭାଷାରେ ଗୌରଚରଣ ଯେଉଁ ମୂର୍ଚ୍ଛନା ସୃଷ୍ଟି କରିଅଛନ୍ତି, ତାହା କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଉଭୟଙ୍କଠାରେ ଦୁର୍ଲଭ । ଗୌରଚରଣଙ୍କର ସମ୍ୟକ ସଂସ୍କୃତ ଜ୍ଞାନ ଥିଲେ ସୁଦ୍ଧା ପ୍ରାକୃତ ପଦ ଯୋଜନା କରିବାରେ ସେ ସମଧିକ ଭାବରେ ଆଗ୍ରହୀ । ଏପରିକି ପଲ୍ଲୀସୁଲଭ ଭାଷାରେ ଅନୁପ୍ରାସ ସୃଷ୍ଟି କରି ତହିଁରେ କବିତା ମଣ୍ଡନ କରିବାରେ ସେ ସୁଦକ୍ଷ । କବିସୂର୍ଯ୍ୟଙ୍କ କବିତାବଳୀ ତତ୍ସମ ଶବ୍ଦରେ ପରିପୂର୍ଣ୍ଣ । ଗୋପାଳକୃଷ୍ଣ କବିତାରେ ତତ୍ସମ ଶବ୍ଦର ପ୍ରୟୋଗ ଅପେକ୍ଷାକୃତ କମ । କିନ୍ତୁ ଗୌରଚରଣଙ୍କ କବିତା-ବଳୀରେ ତଦ୍ଭବ ଓ ଦେଶଜ ଶବ୍ଦର ଅନୁପାତ ଯଥେଷ୍ଟ ବେଶି । ମହାପଣ୍ଡିତ ଥିବାରୁ କବିସୂର୍ଯ୍ୟଙ୍କର ଉପେନ୍ଦ୍ରଭଞ୍ଜଙ୍କ କୋଠିକି ଉଠିବାର ସ୍ୱାଭାବିକ ପ୍ରୟାସ ଥିଲା; କିନ୍ତୁ ସେ ପ୍ରୟାସ ଗୋପାଳ-କୃଷ୍ଣ ବା ଗୌରଚରଣଙ୍କର ଆଦୌ ଥିଲା ବୋଲି ପ୍ରତୀତ ହୁଏ ନାହିଁ । ଗୋପାଳକୃଷ୍ଣଙ୍କ ଶୈଳୀଠାରୁ ମଧ୍ୟ ଗୌରଚରଣଙ୍କ ଶୈଳୀ ସମଧିକ ନିରାଡ଼ମ୍ବର । କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ଅପେକ୍ଷା ଅଧିକ ପ୍ରସଙ୍ଗରେ ଓ ଅଧିକ ସଂଖ୍ୟାରେ ଗୌରଚରଣ କବିତା ରଚନା କରି ସମଧିକ ପ୍ରସାର ଲାଭ କରିଅଛନ୍ତି । ଏକା ତାଙ୍କ କୃଷ୍ଣଲୀଳା ପୁସ୍ତକ ଆକାରରେ କବିସୂର୍ଯ୍ୟ ଗ୍ରନ୍ଥାବଳୀ ଓ ଗୋପାଳକୃଷ୍ଣ ପଦ୍ୟାବଳୀର ସମାନ । କଳିଙ୍ଗର ସଙ୍କୀର୍ତ୍ତନ ମଣ୍ଡଳମାନଙ୍କରେ ଗୌରଚରଣଙ୍କ ରଚନାର ବ୍ୟାପକ ଆଦର

ଦୃଷ୍ଟି ହୁଏ । ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କ ଶ୍ରୀମୁଖ ଭାଷାରେ (ବଙ୍ଗଳା) କବିତା ଲେଖିବାକୁ ସେ ଯୁଗରେ କେତେକ କବି ଗୌରବ ଜ୍ଞାନ କରିଥିଲେ । ଗୌରଚରଣ ଓ ବସନ୍ତ ରାସ ଗ୍ରନ୍ଥର କବି ପିଣ୍ଡିକ ଶ୍ରୀଚନ୍ଦନ ଏମାନଙ୍କ ମଧ୍ୟରେ ପ୍ରସିଦ୍ଧ । କବିସୂର୍ଯ୍ୟଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ "ହ"ଗୀତରେ ପ୍ରଥମ ପଂକ୍ତି ମଧ୍ୟ ବଙ୍ଗଳା । କବିସୂର୍ଯ୍ୟ ଗୋପାଳକୃଷ୍ଣ ଓ ଗୌରଚରଣଙ୍କର ନିମ୍ନ ଉଦ୍ଧୃତ ଗୀତମାନଙ୍କରୁ ସେମାନଙ୍କ ପ୍ରତିଭା ଓ ରଚନା ଶୈଳୀର ପାର୍ଥକ୍ୟ ସ୍ପଷ୍ଟ ପ୍ରକଟିତ ହେବ ।

କବିସୂର୍ଯ୍ୟ—

ରେ କିଶୋର ! ରୁଷିବାର ସିନା ଜାଣୁ
ରସ ଜଳଧିରେ ଅବଗାହି ଧୀରେ ତତ୍ତ୍ୱ ତ ସାର ନ ଘେନୁ । ଘୋଷା ।
ରମଣୀସ୍ୱ ଜାଣି, ରସି ସହିଁ ପୁଣି, ନ ଭରି ପରିବାଦକୁ
ରୋଷ ଅଙ୍ଗୀକାର କରି କି ତାହାର ଅଳପ କଥା ପଦକୁ ।୧।
ରହି ତ ମୃଦୁଳ ନୋହେ ତାକୁ ଅଳଂକାରକୁ ନିକି ନ ଆଣି
ରସିକାଙ୍କ ଶିଖାମଣି ଯେନୁ ଶିଖାଶିଖି ଭୁଲି କାହିଁ ପୁଣି ।୨।
ରକତ ବ୍ୟକତ ହେଲେ ଯଦି କ୍ଷତ ହୁଅଇ ଅସେବନିକ
ରଦାଗ୍ର ସ୍ମରଣ ଅବା କେତେ ଦୋଷ ନ କରି ଟିକେ ବିବେକ ।୩।
ରତିଛିଶରଣ ଯାହାର ଶରଣ ଦେଖିଥିଲେ ତାକୁ ନେହେ
ରହନ୍ତୁ କି ଲଜ୍ଜ ବୋଧେ ଜମି ଆଜି ଭୂଜେ ଭେଟ ଦେବା ମାହେ ।୪।
ରଙ୍କରତନ ଲଭିକୁ ପରି ଏବେ ରତି ଯତନକୁ ଭଲେ
ରମ୍ୟ ଶ୍ୟାମ ଛବି କିଶୋରରେ କବିରବି ସପ୍ରଭୁରୁ ବୋଲେ ।୫।

—୦—

ଗୋପାଳକୃଷ୍ଣ—

କହିଲେ ବହିବୁ ରୋଷ ରେ ସଙ୍ଗାତ ! କହିଲେ ବହିବୁ ରୋଷ
ତୁହି ଘେନିବାକୁ ଅଛୁ କି ଆଉର ନିକୁଞ୍ଜବିହାର ଦୋଷ ॥୦॥

ବ୍ରଜ ପୁରନ୍ଦର ନନ୍ଦନ ସୁନ୍ଦର ବୃନ୍ଦଚନ୍ଦ୍ରବରଣିକ
କରଯୋଡ଼ିରେ ଲୁଟୁଥିଲୁ ଇତର ଆଡ଼େ ନ ଡାଳି ଦୃଷ୍ଟିକ ॥
ଥରକୁ ଥର ପଦ୍ମାବଳୀ ମନକଥା ଲେଖୁ ଦିନ ଅଣ୍ଟୁ ନାହିଁ
ଆଉ ଯେତେସେବା ଆଳୀ ଅଜଣାରେ ତୋତେ ଏକା ସାକ୍ଷୀ ତୁହି ॥

କି କରୁନାହାନ୍ତି ତୋର ନିଜକର ଘୁଇପର ପାଶେ ଥାଇ
ତୁ ସିନା ନିଷେଧ କରୁଛୁ ଆସିଲେ ସେ ଲକ୍ଷା ଲେଖିବା ପାଇଁ ॥
ଘଡ଼ିଏ ଘୁମୁରୁ ହୋଇଲେ ଅନ୍ତର ତୋ ପାଦଚିହ୍ନର ଧୂଳି
ବୋଲି ହେଉଛନ୍ତି ଲୁହ ପୋଛୁ ପୋଛୁ ବୃନ୍ଦାବନ ଯାକ ବୁଲି ॥
ଶୁଣି ସଖୀବାଣୀ ଶ୍ରୀ କିଶୋରୀମଣି ଶ୍ୟାମଘୁମୁରେ ମିଳିଲେ
ଗୋପାଳକୃଷ୍ଣ ପଦାବ୍ଜ ପୋଛୁପୋଛୁ ମୋହନ କୋଳକୁ ନେଲେ ॥

—∘—

ଗୌରଚରଣ—

ସଖି ! ଶ୍ୟାମଘନ ଯେବେ ସେ ମୋହନ—
ମୁରଲି ସୁସ୍ୱରେ ବଜାଇବେ ଗୋ
ସ୍ୱରୁ ଚନ୍ଦ୍ରମୁଖୀ ଚକୁରୀମାନଙ୍କ
ଚେତା ଘୁହୁଁ ଘୁହୁଁ ହଜାଇବେ ଗୋ ॥୦॥
କୁଳବଧୂମାନେ ଏଣିକି, ବାହାରିବେ ନାହିଁ କେଣିକି
ଯେବେ ବହିବଣେ ମିଳିବେ ତା ପାଶେ ଛନ କରି ମନ
ମଜାଇବେ ଗୋ ।
ବ୍ରଜେ ଯେତେ ନବଅବଳା, ବଳହାରେ ସେ ନନ୍ଦବଳା

ଗୁରୁ ହୋଇ ରୁରୁନୟନୀମାନଙ୍କୁ ସ୍ମରଶାସ୍ତ୍ରଅର୍ଥ ବୁଝାଇବେ ଗୋ ।
ନାରୀଙ୍କର ନିଜ ମହତ୍ତ, ଜାଣିଥାଅ ହେଲଣି ହତ
ପାସୋରିଥିବ ଯେ କାମକଳାବିଦ୍ୟା ନିଷ୍ଠୁର କିଶୋର
ହେଜାଇବେ ଗୋ ।
କେତେ ରଙ୍ଗେ ଭୁଲାଇବେଟି, ବନେ ବନେ ବୁଲାଇବେଟି
ଫୁଲଶର ପୂଜା କରିବା ପାଇଁ କି କୁଞ୍ଜେ ଫୁଲଶେଜ
ଶେଜାଇବେ ଗୋ ।
ଦ୍ୱିଜ ଗୌରଚରଣ ଭଣି, ଜାଣିଥାଅ ପ୍ରାଣମିତଣି
ଚୁମ୍ବ ଆଲିଙ୍ଗନ କରିବେ ପ୍ରଦାନ ଅଧରୁ ଅମିୟ ଭୁଞ୍ଜାଇବେ ଗୋ ।

—o—

କି ସୁନ୍ଦର କଳା କହ୍ନାଇ
କେ ଦେଲା ତାଙ୍କୁ ଏ ବେଶ ବନାଇଁ ॥୦॥
ଝୁଲି ଝୁଲି ନାଚେ ଖେମଟା ତାଳରେ
କି ଭଙ୍ଗେ ବାଙ୍କେ ଅନାଇଁ ଅନାଇଁ
ନୂଆ ଗୁଆଳୁଣୀ ଛୁଆ ଭୁଆସୁଣୀ—
ମାନଙ୍କ ମାନସ ନିଏ ମନାଇଁ ।୧।
କିଏ ଡାକୁଥାଏ ଅନାଇଁ ବନାଇଁ
କେହୁ ଡାକେ ଗେଲେ ସନାଇଁ ଦନାଇଁ
ନନ୍ଦରାଣୀଙ୍କର ସେରନ୍ତା ପୁଅକୁ
କେ କେତେ ତମାଳ ମେଲେ ଘେନାଇଁ ।୨।
କିଏ ଯାଚୁଥାଇ ଖଣ୍ଡି ସରପୁଳି
ଅଧାମ ଗୋଟିକା ଛେନା ଘେନାଇଁ
କିଏ ଚୁମ୍ବ ଦିଏ କଲାଗୁନ୍ଦ ମୁଖେ
ସ୍ନେହଲୁହେ ନେତ୍ର ଥନଥନାଇଁ ।୩।

ଅଞ୍ଜଳି ପଡାଇ ଜଞ୍ଜାଳିଆ କହ୍ନୁ
　　　　　　ନବମୀଡ ମାଗେ ଷନ ଖନାଇଁ
ଗୌର ଦ୍ୱିଜ କହ୍ନ ଧନ୍ୟ ଗୋପଗୋଇ !
　　　　　　କେଉଁ ବଅଁ ପୂର୍ବେ ଥିଲ ମନାଇଁ ।୪।
—୦—

ଗୌରଚରଣଙ୍କ ଭଜନମାଳ ଅତ୍ୟନ୍ତ ମର୍ମସ୍ପର୍ଶୀ । ସେଗୁଡ଼ିକ ସେ ତଦ୍‌ଗତ ଚିତ୍ତରେ ଲେଖି ଅଛନ୍ତି । ଭଜମୀପୂଙ୍କୁ ସେ ନିତାନ୍ତ ଆପଣାର ବୋଲି ଜ୍ଞାନ କରିଅଛନ୍ତି ଓ ନିଜ ହୃଦୟକୁ ଦ୍ରବ କରି ତାଙ୍କ ପାଦତଳେ ଅର୍ଘ୍ୟ ରୂପେ ଢାଳି ଦେଇଅଛନ୍ତି । ନଚେତ୍ ଏ ସବୁ ପଂକ୍ତି ତାଙ୍କ ଲେଖମୀରୁ ନିଃସୃତ ହୁଅନ୍ତା ନାହିଁ ।

ଯଥା:—

୧) ଗଉରଚରଣ ବୋଲେ ବାଗସ୍ୱମ ପଳାଉଛୁ ଥାଅ ଜାଣିକ
　　ମୋ ମରଣବେଳା ଜାଣି ତଳାଡୋଳା
　　　　　　ଦେଖାଇବ ଏହି ଠାଣିକ ॥ ପୃ ୨୨

୨) କଲେ ଅନୁକୂଳ ଗୋକୁଳ ଯୁବତୀ ପଦ୍ମରଣ ଝ୍ୟନିବାସ ଗୋ
　　ଗୌର ଦ୍ୱିଜ ବୋଲେ ମୋତେ ସଙ୍ଗେ ନିଅ
　　　　　　ମୁଁ ପରା ତୁମ୍ଭର ଦାସ ଗୋ ॥ ପୃ ୨୪

୩) ସତେ କି ନଦିଆପୁରେ ବିଷ୍ଣୁପ୍ରିୟା ପରାଣନାଥଙ୍କୁ ଦେଖିବ
　　ଶଚୀମାତାଙ୍କର ନୟନ ସଙ୍ଖାଳି ଗୋରା ନାମ ହୃଦେ ଲେଖିବ ।
　　ଶ୍ରୀବାସ ଅଙ୍ଗନେ ଗୌରଭକ୍ତଗଣେ ସଙ୍କୀର୍ତ୍ତନାମୃତ ଚାଖିବ
　　ସାଧୁଙ୍କର ପଦଧୂଳିକି ସଙ୍ଖାଳି କରି ସର୍ବାଙ୍ଗରେ ମାଖିବ ।
　　କରି ମନ ନିଷ୍ଠ ସଭିଙ୍କ ଉଚ୍ଛିଷ୍ଟ ସାଦରେ ତୁଣ୍ଡରେ ଭକ୍ଷିବ
　　ଗୌର ଛଡ଼ା ଫୁଲ ତୁଳସୀ ଅମୂଲ୍ୟ ଚୂଳରେ ପୂରାଇ ରଖିବ ।
　　　　　　　　　　　　　　　　　　　ପୃ ୩୫

ସେ ଯେ ଭିତର ବାହାର ସବୁ ବାସୁଦେବମୟ ଦେଖୁଥିଲେ ତାହା ଶ୍ରୀ ରାଧାଙ୍କ ମୁହଁରେ ଫୁଟାଇଥିବା ତାଙ୍କର ନିମ୍ନ କବିତାଟିରୁ ସ୍ପଷ୍ଟ ସୂଚିତ ହୁଏ ।

କାହିଁ ରଖିବି ଏ ନେତ୍ର ଲୋ ସଜନି ! କାହିଁ ରଖିବି ଏ ନେତ୍ର
ଯେଣେ ଚାହିଁ ଦେଲେ ତେଣେ ଯେ ଦିଶନ୍ତି କଣେ ଏ କସ ବିଚିତ୍ର ॥
ଏ ବଡ଼ ଅପୂର୍ବ ହେଲା ବୋଲି ପୂର୍ବ ପାର୍ଶ୍ବକୁ ଚାହାନ୍ତେ ଫେରି
ଯମୁନା ତନ୍ନା ହୋଇ ବହୁଛନ୍ତି ନୀଳିମା ଛବିକି ଧରି ।୧।
ଦେଖି ଏ ଲକ୍ଷଣ ଫାଲଟି ତକ୍ଷଣ ଦକ୍ଷିଣେ ଈକ୍ଷଣ କଲି
ସେ ଦିଗେ ହୃଦିର ପୁଣି ପୁରନ୍ଦର ନୀଳମଣି ତ ଛଇଲି ।୨।
ପଶ୍ଚିମକୁ ଆଳି ! ଚାହାନ୍ତେ ମୁଁ ଭାଳି ଗିରି ଗୋବର୍ଦ୍ଧନ ଶୋଭା
ନବ ପଲ୍ଲବ ତରୁଲତା ମଣ୍ଡିତ କୋଟି ମରକତ ଆଭା ।୩।
ଭାଳିଲି ଚକିତ ହେଲି ମୁଁ କାତର ଉତ୍ତରକୁ ଦେଲି ଦୃଷ୍ଟି
ସେ ଦିଗେ ତମାଳ ବନ ମାଳ ମାଳ ସେ ଶ୍ୟାମଳ ଶୋଭା ସୃଷ୍ଟି ।୪।
ଆକାଶକୁ ଦୃଷ୍ଟି ଦେଲି ରେ ବିମ୍ବୋଷ୍ଠି ! ଛନ ଚିତ୍ର ଦକ ଦକ
ସେ ନନ୍ଦନନ୍ଦନ କାନ୍ତି ନବଘନ ଦିଶିଗଲେ ଜକ ଜକ ।୫।
ଦଣ୍ଡେ ପରଯନ୍ତେ ଗଣ୍ଡେ କର ଦେଇ ରହିଲି ବଦନ ପୋତି
ନବଦୂର୍ବାଙ୍କୁର ମହୀରେ ଅଙ୍କୁର ସେ ପୁଣି ସେହି ଆକୃତି ।୬।
ଭାଳିଲି ଗୁମାନ ମାନ ମାନସରୁ ନୟନ ବୁଜିଲି ଯହୁଁ
ଗୌର ଦ୍ୱିଜ କହେ ହୃଦୟ ମଧ୍ୟରେ ଉଦୟ ହୋଇଲେ ତହୁଁ ।୭।

—o—

ଏହିପରି ଅମୃତ ନିଃସ୍ୟନ୍ଦ ସରଳ ତରଳ ଭାଷା ନିବଦ୍ଧ ପୁସ୍ତକ ରଚନାରେ କବି ଗୌରଚରଣ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରି ଯାଇଅଛନ୍ତି । ବଣ ମାଳତୀ ବଣରେ ଫୁଟି ହଜିଗଲା ପରି

ତାଙ୍କର କବିତାମାନ ଏ ସଂଗ୍ରହ ବିନା ବିସ୍ମୃତି ଅନ୍ଧାରରେ ପଡ଼ି ସଡ଼ି ଯାଇଥାନ୍ତା । କିନ୍ତୁ ଜଗନ୍ନାଥ ମହାପ୍ରଭୁଙ୍କ ଅପାର କରୁଣାରୁ ତାହା ନିବାରିତ ହେଲା ।

**ଗୌରଚରଣ ଓ ଓଡ଼ିଶୀ ସଙ୍ଗୀତ**

ଉତ୍ତର ଭାରତ ଓ ଦକ୍ଷିଣ ଭାରତର କୃଷ୍ଟିରେ ଯାହା ଯାହା ସର୍ବୋତ୍ତମ ବୋଲି ବିବେଚିତ କଳିଙ୍ଗ କୃଷ୍ଟିରେ ସେ ସବୁର ଅପୂର୍ବ ସମ୍ମିଶ୍ରଣ ଲକ୍ଷିତ ହୋଇଥାଏ । ଏ ଦୁଇ ଭୂଖଣ୍ଡ ମଧ୍ୟରେ କଳିଙ୍ଗ ମଧ୍ୟବର୍ତ୍ତୀ ସ୍ଥାନ ଅଧିକାର କରିଥିବାରୁ ଏହା ସମ୍ଭବ ହୋଇଅଛି । କଳିଙ୍ଗର ସଙ୍ଗୀତ ମଧ୍ୟ ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧ୍ୟରେ ମଧ୍ୟବର୍ତ୍ତୀ ସ୍ଥାନ ଅଧିକାର କରି ନିଜର ସ୍ୱତନ୍ତ୍ର ବିଭୂତି ଅର୍ଜ୍ଜନ କରିଅଛି । କଳିଙ୍ଗର ଅପର ନାମ ଓଡ଼ିଶା ହୋଇଥିବାରୁ କଳିଙ୍ଗ ସଙ୍ଗୀତ ସାଧାରଣତଃ ଓଡ଼ିଶୀ ସଙ୍ଗୀତ ବୋଲି କଥିତ । ଓଡ଼ିଶୀ କଣ୍ଠ ସଙ୍ଗୀତ ହିନ୍ଦୁସ୍ଥାନୀ କଣ୍ଠ ସଙ୍ଗୀତ ପରି କେବଳ ସ୍ୱରର ବିଳାସ ନୁହେ । ଓଡ଼ିଶୀ ସଙ୍ଗୀତ ଓଡ଼ିଶାର ଅଳଙ୍କାର ବିଭବମୟ ସାହିତ୍ୟର ନିତ୍ୟ ବାହନ । ବ୍ରିଟିଶ ପୂର୍ବଯୁଗରେ ଓଡ଼ିଆରେ ସାହିତ୍ୟ ବିନା ସଙ୍ଗୀତ ନ ଥିଲା ବା ସଙ୍ଗୀତ ବିନା ସାହିତ୍ୟ ନ ଥିଲା । ଓଡ଼ିଶୀ ସଙ୍ଗୀତ ସମଧିକ ମଧୁମୟ ହେବାର କାରଣ ଓଡ଼ିଆ ଭାଷା ହସନ୍ତ ବିବର୍ଜିତ । ଏହାର ଅକ୍ଷରମାନଙ୍କ ଉଚ୍ଚାରଣର ପୂର୍ଣ୍ଣ; ବଙ୍ଗଳା ବା ହିନ୍ଦୀ ଭାଷାର ଅକ୍ଷରମାନଙ୍କ ଉଚ୍ଚାରଣ ପରି ଖଣ୍ଡିତ ନୁହେ । ଓଡ଼ିଶାର ଗୋଟିପୁଅ ଓ ପାଲା ଅନୁଷ୍ଠାନଦ୍ୱାରା ଓଡ଼ିଶାର ତୌର୍ଯ୍ୟତ୍ରିକ (ଗୀତ,କାବ୍ୟ ଓ ନୃତ୍ୟ ଏକତ୍ରେ) ଯୁଗ ଯୁଗ ହେବ ବିକାଶ ଲାଭ କରିଅଛି । ଉଚ୍ଚ କୋଟୀର ସଙ୍ଗୀତହିଁ ଜାତିର ସମୁନ୍ନତ କୃଷ୍ଟିର ପରିଚୟସୂଚକ । ଏ ବିଷୟରେ

ଓଡ଼ିଶାର ସୌର୍ଯ୍ୟନ କ ଯେନ ଓଡ଼ିଶା କେବଳ ସମଗ୍ର ଭାରତରେ ନୁହେଁ ସମଗ୍ର ପୃଥିବୀରେ ମଧ୍ୟ ଶ୍ରେଷ୍ଠ ଆସନର ଅଧିକାରୀ । ସଡ଼େଇ କଳାର ଛଉ ନାଚ ଦ୍ୱାରା ଏହା ସଭ୍ୟଜଗତ ଆଗରେ ସୁପ୍ରମାଣିତ ହୋଇ ସାରିଅଛି । ଗୋଟିପୁଅ ନାଚର ମହତ୍ତ୍ୱ କେବଳ ବିଦେଶରେ ସ୍ୱୀକୃତ ହୋଇନାହିଁ ବୋଲି ଦେଶର କେତେକ ଶିକ୍ଷାଭିମାନୀ ପ୍ରକାଶ୍ୟରେ ତା ପ୍ରତି ଉପେକ୍ଷା ପ୍ରକାଶ କରୁଅଛନ୍ତି । ଏହା ବହୁକାଳସ୍ଥାୟୀ ଦାସତ୍ୱରୁ ଉତ୍ପନ୍ନ ହୀନ ଗୌଣ ମନୋବୃତ୍ତିର ଫଳ ମାତ୍ର । ଓଡ଼ିଶାର ପ୍ରସିଦ୍ଧ ମନ୍ଦିରମାନଙ୍କର ଯେଉଁ ସବୁ ମୂର୍ତ୍ତି ଖୋଦିତ ହୋଇଅଛି ତନ୍ମଧ୍ୟରୁ କେତେକଟିରୁ ଦେଶବ୍ୟାପୀ ସଙ୍ଗୀତଚର୍ଚ୍ଚାର ପୂର୍ଣ୍ଣ ପରିଚୟ ମିଳେ । ବ୍ରିଟିଶ ପୂର୍ବ ଯୁଗରେ ଓଡ଼ିଶାରେ ଗ୍ରାମେ ଗ୍ରାମେ ଯାତ୍ରାଦଳ, ପାଲାଦଳ ଓ ଗୋଟିପୁଅ ଦଳ ଥିଲେ । ଦକ୍ଷିଣ ପଟେ ଦାସକାଠିଆ ଦଳଙ୍କର ମଧ୍ୟ ଅନୁରୂପ ପ୍ରସାର ଥିଲା । ଇଂରାଜି ଶିକ୍ଷା ପ୍ରଭାବରେ ଦେଶର ଆର୍ଥିକ ଜୀବନ ଓ ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିବାରୁ ଓଡ଼ିଶୀ ସଙ୍ଗୀତର ଏହି ପୋଷକ ଅନୁଷ୍ଠାନଗୁଡ଼ିକ କ୍ରମଶଃ ମ୍ରିୟମାଣ ହୋଇପଡ଼ୁଅଛି । ତଥାପି ଚନ୍ଦନଯାତ୍ରା ଓ ଝୁଲଣଯାତ୍ରା ସମୟରେ ପୁରପଲ୍ଲୀରେ ଏ ସବୁ ଦଳମାନଙ୍କର ଯେଉଁ ସମାବେଶ ଏବେ ସୁଦ୍ଧା ଲକ୍ଷିତ ହେଉଅଛି ତହିଁରୁ ଜଣାଯାଏ ଯେ ସକଳ ପ୍ରକାର ବିପର୍ଯ୍ୟୟକୁ ଏଡ଼ି ଦେଇ ଓଡ଼ିଶୀ ସଙ୍ଗୀତ ଏ ପର୍ଯ୍ୟନ୍ତ ସୁଦ୍ଧା ନିଜ ମହିମାରେ ମୁଣ୍ଡ ଟେକି ରହିଅଛି । ପୂର୍ବେ ସଙ୍ଗୀତରେ ପାରଦର୍ଶିତା ଦେଖି ଭଦ୍ରଲୋକମାନଙ୍କର ମାର୍ଜିତ ବା ଉନ୍ନତ ରୁଚିର କଳନା କରାଯାଉଥିଲା । ସଙ୍ଗୀତ ନ ଜାଣିଥିବା ଲୋକେ କୌଣସି ଗ୍ରାମକୁ କୁଣିଆ ହୋଇଯିବାକୁ ଭରସୁ ନ ଥିଲେ । ଏ ଅଧୋଗତିର ଯୁଗରେ ମଧ୍ୟ ପାଲାବାଲାମାନଙ୍କ ସାହିତ୍ୟ ଓ ସଙ୍ଗୀତଜ୍ଞାନ

ଦେଖିଲେ ସେମାନେ ଆଗେ ଯେଉଁମାନଙ୍କ ପାଇଁ ରସପରିବେଷଣ କରୁଥିଲେ ସେମାନଙ୍କ ଗ୍ରାହକତା କେତେ ଉଚ୍ଚ କୋଟିର ଥିଲା ତାହା ବେଶ ଜଣାପଡ଼େ । ଏହି ଦଳମାନଙ୍କଦ୍ୱାରା ଓଡ଼ିଆ କବିମାନଙ୍କର ସଙ୍ଗୀତାଦି ଗୀତମାନ ଅଳ୍ପକାଳ ମଧ୍ୟରେ ଦେଶ-ବ୍ୟାପୀ ପ୍ରସାର ଲାଭ କରିଥିଲା । ଆଜି ଯେଉଁ ସବୁ ଗୀତ ସଙ୍ଗୀତ ନାମରେ ପରିଚିତ ସେ ସବୁ ଆଗେ ଧ୍ରୁବ ପଦ ବିଶିଷ୍ଟ ହୋଇ ରଚିତ ହେଉଥିଲା । ଘୋଷା ପଦ ସ୍ୱତନ୍ତ୍ର ଥିଲା । ତେଣୁ ଏ ଶ୍ରେଣୀର ଗୀତମାନଙ୍କୁ ଚଉପଦୀ କୁହାଯାଉଥିଲା । କିନ୍ତୁ ପରେ ଏ ଚଉପଦୀ ନିୟମ ପାଳିତ ନ ହେଲେ ସୁଦ୍ଧା ସଙ୍ଗୀତ ମାତ୍ରେ ଚଉପଦୀ ବୋଲି କଥିତ ହେଲା । ପୁରୁଣା ଲୋକମାନେ ସଙ୍ଗୀତକୁ ଏବେ ସୁଦ୍ଧା ଚଉପଦୀ କହିଥାନ୍ତି ।

ଗୌରଚରଣ ବହୁସଂଖ୍ୟକ ଓଡ଼ିଶୀ ସଙ୍ଗୀତ ରଚନା କରି ଅଛନ୍ତି । ଏହାଛଡ଼ା ତାଙ୍କର ଜଣାଣ, ଭଜନ, ବୋଲି ଏବଂ ଓଡ଼ିଆ ବଙ୍ଗଳା ମିଶା ଓ ଓଡ଼ିଆ ବ୍ରଜବୋଲି ମିଶା ସଂକୀର୍ତ୍ତନ ପଦାବଳୀ ରହିଅଛି । ସେ ଓଡ଼ିଶୀ ସଙ୍ଗୀତର ଜଣେ ଶ୍ରେଷ୍ଠ ପ୍ରତିନିଧି । ଜୀବନର ୭୭ ବର୍ଷ ମଧ୍ୟରେ ସେ ଶାଣୋତ୍ତୀର୍ଣ୍ଣ ମଣି ତୁଲ୍ୟ ଘସିର ବହୁତ ଗୁଡ଼ିଏ ଅମୂଲ୍ୟ ସଙ୍ଗୀତ ରଚନା କରି ଓଡ଼ିଶାର ଅନ୍ୟାନ୍ୟ ସଙ୍ଗୀତକବିଙ୍କ ମଧ୍ୟରେ ଉଚ୍ଚାସନର ଅଧିକାରୀ ହୋଇ ଅଛନ୍ତି । ତାଙ୍କ ବେଳକୁ କବିସମ୍ରାଟ ଉପେନ୍ଦ୍ରଭଞ୍ଜ, କୃଷ୍ଣ ଦାସ, ବନମାଳୀ, କବିସୂର୍ଯ୍ୟ ବଳଦେବ, ଯଦୁମଣି, ରାମକୃଷ୍ଣ, ଗୋପାଳକୃଷ୍ଣ ପ୍ରଭୃତି ବହୁ କବି ଓଡ଼ିଶାର ସଙ୍ଗୀତ ଭଣ୍ଡାରକୁ ସମୃଦ୍ଧ କରି ଖ୍ୟାତିର ଉଚ୍ଚ ପଦବୀରେ ଆରୂଢ଼ ଥିଲେ । ତଥାପି ସେ ନିଜର ସ୍ୱତନ୍ତ୍ର ପ୍ରତିଭାବଳରେ ନିଜ ପାଇଁ ଗୋଟିଏ ଉଚ୍ଚ ଆସନ ଅର୍ଜ୍ଜନ କରି ଯାଇଅଛନ୍ତି । ତାଙ୍କ ସଙ୍ଗୀତାବଳୀ ଏବେ

ସୁଦ୍ଧା ପାଲବାଲଦଳ ଓ ଗୋଟିପୁଅଦଳମାନେ ବକ୍ଷିପ୍ତ ଭାବରେ ଅମୂଲ୍ୟ ସମ୍ପଦ କରି ସାଇତି ଅଛନ୍ତି । ଏ ପୁସ୍ତକରେ ସେ ସବୁର ବ୍ୟାପକ ସଂଗ୍ରହ କରାଯାଇଅଛି । ଆଶାକରାଯାଏ ଏଣିକି କବିସୂର୍ଯ୍ୟ ବଳଦେବ ଓ କବିକଲହଂସ ଗୋପାଳକୃଷ୍ଣଙ୍କ ଗୀତାବଳୀ ପରି ସେ ସବୁ ଓଡ଼ିଶାର ପୁରପଲ୍ଲୀର ଘରେ ଘରେ ଧ୍ୱନିତ ହେବ।

ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଥିବା ଓଡ଼ିଶାର ସଙ୍ଗୀତ ସମ୍ପଦରୁ ତଳେ କେତୋଟି ମାତ୍ର ଉଦ୍ଧାର କରି ଏଠାରେ ଓଡ଼ିଶୀ ସଙ୍ଗୀତ ରଚନାର କ୍ରମବିକାଶର କଥଞ୍ଚିତ ସୂଚନା ଦିଆଗଲା । ଉଦାହରଣ ସ୍ୱରୂପ କେବଳ ପ୍ରସିଦ୍ଧ ପ୍ରସିଦ୍ଧ କବିଙ୍କ ସଙ୍ଗୀତର ନମୁନା ଉଲ୍ଲେଖ କରାଯାଇଥିଲା ।

**ପଞ୍ଚଦଶ ଶତାବ୍ଦୀ:—**

ମହାରାଜା କପିଳେନ୍ଦ୍ର ଦେବଙ୍କ ପ୍ରଣୀତ

(ପରଶୁରାମ ବିଜୟ)

ସଂସ୍କୃତ ନାଟକର ଓଡ଼ିଆ ସଙ୍ଗୀତ

(ଅମର ରାଗେଣ ଗୀୟତେ)

କେବଣ ମୁନିକୁମର    ପରଶୁ ଦକ୍ଷିଣ କର
ବାମେଣ ଶୋହେ ଧନୁଶର ନା
କୋପେଣ ବୋଲଇ ରାର ତ    ତୁ ସେ ମୋ ବଧିଲୁ ତାତ
ଆଜ ତୋର ଛେଦିବଇଁ ମାଥ ନା
ଶୁଣ ରାଜନ ହେ,    କିଏ ତୋର ରାଜେ ବ୍ରହ୍ମ ବଧେ ନା ॥
ଏ ତୋର ଚନ୍ଦ୍ରବଦନ    ମେଘେ କି ତାଙ୍କିଲା ଜହ୍ନ
ତାହା ଦେଖି ବିକଳ ମୋ ମନ ନା

ଆବର ଦେଖଇ ଅରଷ୍ଟି   ସଂଜ୍ୟ ତୋ ରୁଧିର ବୃଷ୍ଟି
ପୁର ବେଢ଼ି ରୋଦନ୍ତ ଶୃଗାଳ ନା ॥

—୦—

ଷୋଡ଼ଶ ଶତାବ୍ଦୀ:—

ମହାରାଜ ପ୍ରତାପରୁଦ୍ର ଦେବଙ୍କ ସଭା କବି
କ୍ଷେତ୍ର ରାଏ
(ରାଗ ମଲ୍ଲାର—ଆଦ)

ଯ଼ୁ ଜୟ ହରହର ମିଳତ କଳେବର ସୁରମଣ୍ଡନ ପୁରମଣ୍ଡନୁଆ
ଗପତି ବାହନ, ଗୋପତି ବାହନ ଫଣିଶଯନ ଫଣିକଙ୍କଣୁଆ
ନ୍ଦ୍ରକଶେଖର ଚନ୍ଦ୍ରଶେଖର ଶ୍ରୀଧର ଗଙ୍ଗାଧର ଇଆରେ
ଜାୟୁଧ ଅବ ତ୍ରିଶୂଳ ଆୟୁଧ ମାବଲ୍ଲଭ ଉମାବଲ୍ଲଭଭୁଆରେ ।

—*—

ସପ୍ତଦଶ ଶତାବ୍ଦୀ:—

ଯଦୁପତି ଦାସ
(ଏକ ତାଳ)

ନ୍ ଅବନୀପତି ବହୁମେ ଶକତି ବିବିଧ ରଙ୍ଗ ରତି ବିହରତିଆ
ବଶ୍ୟେ ଗଞ୍ଜିତ ଲାଖ ରଜନୀପତି ଗୌରବେ ଔରକ ଗିରିପତିଆ
ବୀ ଭାନୁମତୀ ରସବତୀ ସଙ୍ଗତି ବିବିଧ ରଙ୍ଗଯୁତ ବିହରତିଆ
ଳଗିର କୋ ପତି ଚରଣ କମଳେ ମତି ବିଜୟ ଭୁ ନରସିଂହ
ନରପତିଆ ।

—୦—

## ରସକଲ୍ଲୋଳକାର ଦୀନକୃଷ୍ଣ ଦାସ

(ରାଗ ଧନାଶ୍ରୀ-ତାଳ ଆଠତାଳ)

ସଖି ! ଶୁଣ ଏ ସ୍ୱର । ବ୍ରଜଯୁବତୀମାନଙ୍କ ଏ ଚିତ୍ତଚୋର ॥ଘୋଷା
ମୁରଲୀ କରେ ଧରି, ମାରି ନେତ୍ରକଟାକ୍ଷ,
ପତିବ୍ରତ ହରି, ନଅଇ ଜୁର କରି
ଟା ପାଲରୁ ଉବୁରି ଅଛୁ କେ ବ୍ରଜନାରୀ ନ ପଡ଼ି ଧରା ।୧
କଟି ତଟେ କିଙ୍କିଣୀ ବାଜଇ କିଣି କିଣି
ଶୁଣି କେଉଁ ରମଣୀ କଣି ନୋହିବ ପୁ
ଆହା ତ୍ରିଭଙ୍ଗୀଠାଣି, ବାଙ୍କ ବାଙ୍କ ଚାହାଣି ନେତ୍ର ପସରା ।୨
ଇତ୍ୟାଦି ଇତ୍ୟାଦି

—୦—

## ନୃସିଂହ ପଟ୍ଟନାୟକ

(ରାଗ କାଫି-ଏକ ତାଳି)

ସମ୍ପୂର୍ଣ୍ଣ ସୁଧାକର-ବଦନା ବନ୍ଧୁ ।
ସୁନ୍ଦରୀମଣି ସବୁମଧ୍ୟମାରେ ତୁ ମୋ କରୁଣାସିନ୍ଧୁ ।୧
ସଖି ! ଶିରୀଷମୃଦୁ ସରୋଜବାସ ।
ଶମ୍ପା ସୋଦର ବରନରେ ରମା କଲେ ଯେ ଅଙ୍ଗେ ବାସ ।୨
ସିନ୍ଦୂରାରୁଣ ବିମ୍ବ ବନ୍ଧୁଲୀ ଜବା ।
ସୁରଙ୍ଗ ତୋର ଦନ୍ତବାସକୁରେ ସମ କି ଗୁଣେ ଅବା ।୩
ଇତ୍ୟାଦି ଇତ୍ୟାଦି [ଚମ୍ପୂ

—୦—

## ଧନଞ୍ଜୟ ଭଞ୍ଜ (କବିସମ୍ରାଟଙ୍କ ପିତାମହ)

(ରାଗ କାମୋଦୀ-ତାଳ ଏକତାଳି)

ଛଳ ଛଳ ହସି ହସି ଆସୁ ଯେ ଥାଉ
ଛାଲେ କି ତା ନେତ୍ରପଥେ ଦେଖିବି ଆଉ ।୧।
ଛଳ ଯେ ଚୁମ୍ବିଲ ବଦନେ ନୟନେ ଚୋର
ଛଗ ମେଲି ଭିଡ଼ିଲୁ ଯେ ଗଲା ମୋହର ।୨।
ତାଙ୍ ଘୋର ଲେଖିଲିଁ ତୋ କୁଚେ ନଖକ
ଛମ କାମ ଚେତାଇ ତା ହିରେ ବିବେକ ।୩।
ଇତ୍ୟାଦି ଇତ୍ୟାଦି [ଚମ୍ପୂ]

—o—

## ନୀଳକଣ୍ଠ ଭଞ୍ଜ (କବିସମ୍ରାଟଙ୍କ ପିତା)

(ରାଗ କାଫି)

ପ୍ରାଣ ବାନ୍ଧବୀ ବଦନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲା ଥୋର ହସ୍ତରେ
ସେ ମୋ ଚମ୍ପକଗୋରୀ
ଧନ୍ୟ ଧନ୍ୟ ତାହାର ଶୋଭା ଗୃଭୂଷା ।୧।
ଜୁଡ଼ାରେ ଥିଲା ତାର କିଆ ପାଖୁଡ଼ା
ତା ଦେଖି ଅଙ୍ଗେ ହେଲା ଅନଙ୍ଗପୀଡ଼ା ।୨।
ଲଲାଟେ ଥିଲା ତାର ସିନ୍ଦୁର ବିନ୍ଦୁ
ତା ଦେଖି ବଢ଼ିଲା ଯେ ଆନନ୍ଦ-ସିନ୍ଧୁ ।୩।
ଗଇରିକର ଛଟା ଅଙ୍ଗେ ଶୋଭିତ
ତା ଦେଖି ଧଇର୍ଯ୍ୟ ମୋ ହୋଇଲା ହତ ।୪।
ଇତ୍ୟାଦି ଇତ୍ୟାଦି

—o—

ଅଷ୍ଟାଦଶ ଶତାବ୍ଦୀ—

## କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ପ୍ରିୟେ କି କଲୁ ଏ ସ୍ୱପ୍ନ ରେ । ପୁରୁଷାୟିତରେ ମାତି ରେ । ଘୋଷା ।
ପଦ୍ମମୁଖୀ ଝାଳ ଖସି; ପ୍ରସନ୍ନେ ଏମନ୍ତ ଦିଶି
ଚଉଦଶ ଶଶୀ କାମ ସଞ୍ଜୀବନେ ସିଞ୍ଚୁଥିଲା ସୁଧାରାଶି ରେ ॥
ପୟୋଧରେ ଖେଳେ ହାର; ପୁଣି ସ୍ୱରୁ ଚଳେ ଚୋର
ପ୍ରାଚୀ ଅଚଳେ ଲୀଳାଦୋଳା ରଚିଲା ପରାଏ ଅନେକ ତାରା ରେ ॥
ପ୍ରଚଳିତ ସାରାମଣି; ପ୍ରଘାତ ରବିକ ଜଣି
ଚୂଳନେ ରତିକ ଚାଟେଙ୍କ ଆଲତି ଦୋହଳଇ ପୁଣ ପୁଣି ରେ ॥
ଇତ୍ୟାଦି ଇତ୍ୟାଦି

—o—

## ବନମାଳୀ

କି ଦେଖିଲି ଆଜ ନେହ ଲେ ସଙ୍ଗିନ ! କି ଦେଖିଲି ଆଜ ନେହ
ଲଳିତ ମୂରତି କଳି ତ ନୋହିଲା
ଦଳିତ ଅଞ୍ଜନଗାହ ଲେ । ଘୋଷା ।
ଅଳକା କପୋଳେ ଚପଳା କି ଖେଳେ କେକପୁଚ୍ଛ ଚନ୍ଦ୍ରଚୂଳ
ରଚନେ ଜଡ଼ିତ ଯତନେ କୁଣ୍ଡଳ ଝଲକେ ଗଣ୍ଡ ମଣ୍ଡଳ ।୧।
ହୃଦରେ ପଦକ କରଇ ମାଦକ ବାଦ କରେ ନିଶାକରେ
କାମିନୀ ଚିତ୍ତ କୁମୁଦ ପ୍ରଫୁଲ୍ଲିତ କରୁଥାଇ ଲୋକନରେ ।୨।
ଇତ୍ୟାଦି ଇତ୍ୟାଦି

—o—

## ରାମକୃଷ୍ଣ

ସଖି କେ କହେ ଉତ୍ତମ ପ୍ରୀତି ସାର
ପ୍ରୀତି କରି ହେଲି ନାରଖାର । ଘୋଷା ।

ବାରଣ ନ ମାନ ଯାହା କାରଣ ମୁଁ କଲି ରେ
ସୁଧାରୁ କ ବଢ଼େ ବଷଧାର ।
କପଟୀ ପୁରୁଷ ଭଷା ଚନ୍ଦନୁଁ ଶୀତଳ ରେ
ପାଣିରେ କାଟିଲା ପରି ଗାର ।
ପୁରତରେ ଥିବା ଯାଏଁ ପୁରୁଷଙ୍କ ଖ୍ୟାତି ରେ
ଜାଣ ଦରପଣ ପରକାର ।

ଇତ୍ୟାଦି ଇତ୍ୟାଦି

ଊନବିଂଶ ଶତାବ୍ଦୀର ସଙ୍ଗୀତମାନଙ୍କ ନମୁନା ପୂର୍ବରୁ କବିସୂର୍ଯ୍ୟ, ଗୋପାଳକୃଷ୍ଣ ଓ ଗୌରଚରଣଙ୍କ ତୁଳନା ପ୍ରସଙ୍ଗରେ ଦିଆଯାଇଅଛି । ପୁନରାବୃତ୍ତି ଅନାବଶ୍ୟକ । ଉପରେ ପ୍ରଦତ୍ତ ନମୁନାମାନଙ୍କ ସହିତ ସେ ଗୁଡ଼ିକୁ ମିଶାଇ କରି ଦେଖିଲେ ଓଡ଼ିଶୀ ସଙ୍ଗୀତ ରଚନାର ଯେଉଁ ସ୍ତରରେ କ୍ରମବିକାଶ ଘଟିଅଛି ତାହାର ଧାରଣା ଏବଂ କଳିଙ୍ଗର ସଙ୍ଗୀତ କବିମାନଙ୍କ ମଧ୍ୟରେ ଗୌରଚରଣଙ୍କ ସ୍ଥାନ ନିରୂପଣ କରି ହେବ ।

ଗୌରଚରଣ ଶୁଦ୍ଧା ଭକ୍ତିମାର୍ଗର ଜଣେ ଶ୍ରେଷ୍ଠ କବି । ସେ ସାର୍ଥକ ନାମା । "ଗୌର" ଚରଣରେ ତାଙ୍କର ଅନନ୍ୟ ଭକ୍ତି । ତେଣୁ ଯଥାର୍ଥରେ ସେ "ଗୌରଚରଣ ଅଧିକାରୀ" ।

ଜୟ ମା କଳିଙ୍ଗ ଭାରତୀ !

କଳିଙ୍ଗ ଭାରତୀ ଭବନ
ଓଗରପଡ଼ା, କଟକ-୨

ଶ୍ରୀ ବଛନ୍ଦଚରଣ ପଟ୍ଟନାୟକ
ତା ୨୯ । ୧ । ୫୧

# ସୂଚୀପତ୍ର

# ସୂଚୀପତ୍ର

# ଗୀତ କଳ୍ପତରୁ

ପ୍ରଥମ ଶାଖା

## ଗୌରଚରଣ ଗୀତାବଳୀ

[ଏକ]

### ଶ୍ରୀଗୁରୁ ବନ୍ଦନା

(ରାଗ ବଙ୍ଗଳାଶ୍ରୀ, ତାଳ ଆଦ୍ୟତାଳ)

ବନ୍ଦ ଗୁରୁପଦ ଅମୂଲ୍ୟ ସମ୍ପଦ
ସକଳ ବେଦର ସାର
ଯେ କୃପାରୁ କର ପଙ୍ଗୁ ଲଙ୍ଘେ ଗିର
ଯେ କରେ ଭବାବ୍ଧି ପାର ।୧।
ଦେଇ ଜ୍ଞାନାଞ୍ଜନ ଚକ୍ଷୁ ଉନ୍ମୀଳନ
କରାଇଲେ ଯେ ସାକ୍ଷାତେ
ଅଜ୍ଞାନ ତିମିରେ ଅନ୍ଧ ହୋଇଥିଲି
ତହୁଁ ଉଦ୍ଧରିଲେ ମୋତେ ।୨।
ଅଶରଣ ଜନ ଶରଣରକ୍ଷଣ
ପତିତ-ପାବନ-କାରୀ
ଶ୍ରୀଗୌର ଗୋବିନ୍ଦ ଆବେଶ ମୂରତି
ସନ୍ତତ ସତ୍‌ବେଶଧାରୀ ।୩।

ଏମନ୍ତ ଶ୍ରୀଗୁରୁ ବାଞ୍ଛାକଳ୍ପତରୁ
ଯା ପ୍ରକଟ ଅଦଭୁତ
ବିଶୁଦ୍ଧ ବୈରାଗୀ ଶ୍ରୀନାମାନୁରାଗୀ
ଅଲୌକିକ ଶୋଭାବନ୍ତ । ୪ ।
ଶୁକ୍ଳମାଲ୍ୟ ଶୁକ୍ଳ ବସନେ ଭୂଷିତ
ଶୁକ୍ଳ ପଦ୍ମପୀଠେ ବିଜେ
ସେ ପ୍ରଭୁଙ୍କ ଦାସ ଦାସ ଅନୁଦାସ
ଦ୍ୱିଜ ଗୌରଦାସ ଭଜେ । ୫ ।

---

[ ଦୁଇ ]

## ଶ୍ରୀଗୌରହରି ଭଜନାଷ୍ଟକ

(ନବ ନୀରଦ ନିନ୍ଦିତ କାନ୍ତିଧରଂ—ବୃତ୍ତ)

ଭବଭୟ ଭଞ୍ଜନ କାରଣ ଗୋରା
ତ୍ରିଭୁବନ ମୋହନ ମାନସ ଚୋରା ।
କୃପା ସାଗର ନାଗର ଦଣ୍ଡଧାରୀ
ଭଜ ଭଜ ତୁ ରେ ମନ ! ଗୌରହରି ।୧।
ନବରସେ ବିଭୂଷିତ କଳେବର
ଭାବ ବିକାରେ ନିରତେ ଗରଗର
ବିଗଳିତ ପଦ୍ମନେତ୍ରୁ ଅଶ୍ରୁବାରି
ଭଜ ଭଜ ତୁ ରେ ମନ ! ଗୌରହରି ।୨।
ଇନ୍ଦୁ ବିନିନ୍ଦିତ ଗୂରୁ ନଖଛଟା
ନିଜ ନାମ ଗୁଣ ନିଜ ମୁଖେ ରଟା

ନବ ସନ୍ନ୍ୟାସୀ ଅରୁଣାମ୍ବରଧାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୩।
ଦିବ୍ୟ ଜମ୍ବୁନଦ ସ୍ୱର୍ଣ୍ଣକାନ୍ତି ଗୋରା
ମହାଭାବରୂପୀ ଭକ୍ତବେଶଧରା
ଗନ୍ତ ମନ୍ଥରେ ନୃତ୍ୟ ବିଳାସକାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୪।
କୋଟି ଚନ୍ଦ୍ରଜିତ ହର୍ଷ ବଦନୟା
ମୃଦୁ ସ୍ମିତହସା ମୋଦବର୍ଦ୍ଧନୟା
ଗୋପୀ ଚନ୍ଦନୋଜ୍ଜ୍ୱଳ ତିଳକଧାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୫।
ଆଜାନୁଲମ୍ବିତ ମହା-ଭୁଜ-ଟେକା
ଧୂରନ୍ଧର ବିନାଶନେ କାଳ-ଦକା
ସଙ୍କୀର୍ତ୍ତନ ଲମ୍ପଟ କଳୁଷହାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୬।
ପାପୀ ପାବନ ମୂରତି କ୍ଷମାଧାମ
ନାମ ନିମାଇଁ ପଣ୍ଡିତ ମହାଜ୍ଞାନୀ
ଶ୍ରୀ ଶଚୀନନ୍ଦନ ମହା ଅବତାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୭।
ନବଦ୍ୱୀପ ସୁଧାକର ସୌମ୍ୟଶିରୀ
ଖଳ ପାଷଣ୍ଡ ଦୁର୍ଜ୍ଜନ ନାଶକାରୀ
ମୋଦେ ବନ୍ଦେ ହୃଦେ ଗୌର ଅଧିକାରୀ
ଭଜ ଭଜ ଭୁ ରେ ମନ ! ଗୌରହରି ।୮।

———

[ତିନି]

## ବ୍ରହ୍ମାସ୍ତବ

ଜୟ ଜୟ ଦୀନବନ୍ଧୁ ଦୁରିତନିବାରଣ
ଅଗତି ଗତିଦାୟକ ଅଧମ ଉଦ୍ଧାରଣ । ଘୋଷା ।
ଜୟ ବୈକୁଣ୍ଠ ନାୟକ କୈବଲ୍ୟ ମୁକ୍ତିଦାୟକ
ଶଙ୍ଖଚକ୍ର ତେଜ ଏବେ କଲ ବେଣୁ ଧାରଣ । ୧ ।
ଜୟ ଜୟ କୃପାସିନ୍ଧୁ ଜୟ ଦୁଃଖୀ ଜନବନ୍ଧୁ
ପତିତପାବନ ବାନା ପତିତ ନିସ୍ତାରଣ । ୨ ।
ବ୍ରହ୍ମାପଦ ଦେଲ ଯେଣୁ ଗର୍ବେ ନ ଚହ୍ନିଲି ତେଣୁ
ଦେଖାଇଲ ମୋ ସ୍ୱଭାବ ଅହଂକାର ଧରଣ । ୩ ।
ଯେହୁ ଶ୍ରୀଚରଣେ ଦାସ ସେ ଯେବେ କରଇ ଦୋଷ
ପ୍ରଭୁ ତାହାଠାରେ ରୋଷ କରିବା ଅକାରଣ । ୪ ।
ବିଧି ସିଦ୍ଧି ସନମାନ ମୋଠାରେ ନୋହୁ ଏମାନ
ଏତେ ମାତ୍ର ଜଣାଉଛି ପ୍ରଭୁଙ୍କ ଶ୍ରୀଚରଣ । ୫ ।
ଗୌର ଦ୍ୱିଜ କହେ ଗୀତେ ଏହି ଆଜ୍ଞା ହେଉ ମୋତେ
ନିଶିଦିଶି ବସି ନାମ କରିବି ସୁମରଣ । ୬ ।

———

[ଚାରି]

## ଇନ୍ଦ୍ରସ୍ତବ

( ରାଗ ଶଙ୍କରାଭରଣ, ତାଳ ଆଠତାଳୀ )

ଦୀନବନ୍ଧୁ ଭବତ୍ରାହୀ ହେ, ଦୀନବନ୍ଧୁ ଭବତ୍ରାହୀ
ଜୟ କରୁଣାନିଧାନ ତ୍ରୈଲୋକ୍ୟଗୋସାଇଁ ହେ ॥

ଇନ୍ଦ୍ରପଦେ ଗର୍ବବହି ମୁଁ ଯା ନ ଚିହ୍ନିଲି
ଅମ୍ବୁଜ ପଦଯୁଗଳେ ଅପରାଧୀ ହେଲି ହେ । ୧ ।
ଗରବଗଞ୍ଜନ ନାମ ଆବର ଗୋବିନ୍ଦ
ଦର୍ପହାରୀ ବୋଲି ଭଜୁଥାନ୍ତି ଭକ୍ତବୃନ୍ଦ ହେ । ୨ ।
ସମ୍ପଦରେ ଭୋଳ ହୋଇ ମୋହେ ହେଲି ଅନ୍ଧ
ସମ୍ପଦ ନୁହେ ଏ ଭକ୍ତ ପଡ଼ିରେ ବିପଦ ହେ । ୩ ।
ସ୍ୱର୍ଗସୁଖେ କାର୍ଯ୍ୟ ନାହିଁ ନିଅ ବାହୁଡ଼ାଇ
ଶ୍ରୀଚରଣ ସେବା ଦେଇ ପ୍ରଭୁ କର ସାଙ୍ଗ ହେ । ୪ ।
ଧିକ ମୋର ବଡ଼ପଣ ହେଲି କି ଅଜ୍ଞାନ
ଶରଣ ସମ୍ଭାଳ ନାଥ ଗତି ନାହିଁ ଆନ ହେ । ୫ ।
ଚରଣ ତଳେ ଲୋଟନ୍ତେ ସ୍ୱର୍ଗ ପୁରନ୍ଦର
ତୋଳି କୋଳକଲେ ନନ୍ଦନନ୍ଦନ ସୁନ୍ଦର ହେ । ୬ ।
ଇନ୍ଦ୍ର ଗୋବିନ୍ଦ ମିଳନ ଅତୁଲ୍ୟ ମାଧୁରୀ
ଦରଶନେ ଗୌରହରି କବୋଲେ ବଳିହାରୀ ହେ । ୭ ।

———

[ପାଞ୍ଚ]

## ମହାବାହୁ ଜଣାଣ

( ରାଧାନାଥ, ଏ ତୁମ୍ଭ ବଚନ ମାୟା – ବୃତ୍ତ )

ମହାବାହୁ ! ଅଖିଳ ଜଗତନାଥ
ତୁମ୍ଭେ ଥାଉଁ ଥାଉଁ କାହା ପାଦତଳେ ଲୋଟାଇବି ମୋର ମାଥ । ୧ ।
ମହାବାହୁ ! ଲାଜମାଡ଼େ ଏଥିପାଇଁ
ଇତରମାନଙ୍କୁ ହାତ ମେଳିବି କି ତୁମ୍ଭଙ୍କୁ ଛାଡ଼ି ଗୋସାଇଁ ! । ୨ ।

ମହାବାହୁ ! ଭଲେ ଅବଧାନ କର
ତୁମ୍ଭ ବାହାରେ କେ ବଡ଼ ଜଣେ ଅଛି ତା'ଆଗେ ଯୋଡ଼ିବ କର ।୩।
ମହାବାହୁ ! ତୁମ୍ଭେ ତ ବଡ଼ସକର୍ମା
ଆଉ ମୁଁ ସଂସାରେ କାହାକୁ କପାଇଁ ବୋଲିବ ବାବୁ ମହିମା ।୪।
ମହାବାହୁ ! ମୋତେ ମାଗିଆସେ ନାହିଁ
ତୁମ୍ଭ କୃପା ଭିକ୍ଷା ବିନୁ କାହା'ଦ୍ୱାରେ ଯାଚକ ହୋଇବ ଯାଇଁ ।୫।
ମହାବାହୁ ! ଏ ଜୀବନ ଗଲେ ଯାଉ
ଗଉରଚରଣ ପଦ୍ମ ଶ୍ରୀଚରଣ ସ୍ମୃତିକୁ ଡକାଇ ଥାଉ ।୬।

---

[ଛଅ]

## ଗରୁଡ଼ାସନ ଜଣାଣ

ଦୁଃଖ ନାଶନ ଗରୁଡ଼ାସନ ହରି !
ଦୁଃଖ ଜଣାଇବି କାହାକୁ
ଘନନାଥ ଥାଉଁ ଅନ୍ଧାର ଘୋଟୁଛି
ଏ ନନ୍ଦା ଟି ଉଭବାହାକୁ ॥ଘୋଷା॥

ଶିଳ୍ପା ନାବପରେ ବସାଇ କରି ଠେଲଦେଲ ଯେଣୁ ଯାଉଛି ସରି
ରଖ ରଖ ବୋଲି କାହା'କୁ ଡାକିବ ଟ୍ରବଣ ତ କଲ ଲୁହାକୁ ।୧।
ସୁଦାମା ଦାରିଦ୍ର୍ୟ ଭଞ୍ଜନକାରୀ ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ ଛେଦିପକାଇଲ ଗ୍ରାହାକୁ ।୨।
ଅଜାମିଲ ନାମେ ଯେ ମହାପାପୀ ତରିଗଲା ପୁତ୍ର ନାମକୁ ଜପି
ନାଚେକ ମାଇଲ ଶ୍ରୀବତ୍ସ ବ୍ରାହ୍ମଣ ହୃଦରେ ବହିଲ ତାହାକୁ ।୩।
ବନର ହରିଣୀ ଶବରୀମାନେ ଘନେ କୃପା କଲ ପରି ସାକ୍ଷାତେ
ଅର୍ପିତ ଡାକକୁ ନ ଶୁଣୁଛ ଲଜ୍ଜା ନୋହିବ କି ଲକ୍ଷ୍ମୀନାହାକୁ ।୪।

ଯେଉଁ ନାମ ଧରି ପବନସୁତ ଡେଇଁ ସମୁଦ୍ର ଆସିଲ ସଙ୍କେତ
ଗଉରଚରଣ ସେ ପାଦେ ଶରଣ ହରିବ୍ରହ୍ମା ରତେ ଯାହାକୁ ।୫।

---

[ସାତ]

## ଲୀଳାମୟୀ ଜଣାଣ

(ରାଗ ବଙ୍ଗଳାଶ୍ରୀ, ଆଠତାଳୀ)

ଲୀଳାମୟୀ ଏ ଲୀଳା ତୁମ୍ଭର ହେ କେମନ୍ତେ ବୁଝିବି ମୁହିଁ ?
ହରିବ୍ରହ୍ମାଙ୍କୁ ଯେ ଅତି ଅଗୋଚର ଅନନ୍ତ ଅନ୍ତ ନ ପାଇ ।ଘୋଷା।
ଇନ୍ଦ୍ର ବରୁଣ କୁବେର ଆଦି ଯେତେ ଛନ୍ତି ଦଶଦିଗପାଳେ
ବାଣୀ ରମା ଉମା ତୁମ୍ଭର ମହିମା ଜାଣି ନ ପାରିଲେ ତାଳେ ।୧।
କୋଟି କୋଟି ଋଷି କଳ୍ପେ କଳ୍ପେ ବସି ଧ୍ୟାନେ ହେଉଛନ୍ତି ବଣା
ମୁଁ ଛାର ଅଧମ କି କରି ବୁଝିବି ତୁମ୍ଭ ମାୟା ବୁଝାମଣା ।୨।
କାହାକୁ କେବେ କି ନ କରୁଛ ହରି ଦୟାକୁ ସାମନ୍ତମଣି
ମାରିବା ତାରିବା ଦୁଇ କଥା ଭଲ ବହିଛ ସାରଙ୍ଗପାଣି ।୩।
ଶତ୍ରୁମିତ୍ରଙ୍କୁ ଏକ ଗତି ଦିଅ ଏ ତ ବଡ଼ ଆଚମ୍ବିତ
କାହାକୁ ଅଚଳା ବିଭୂତି ସମର୍ପି କାହାକୁ କର ଅର୍ଥିତ ।୪।
କେଉଁ ଗୁଣ ବା ତୁମ୍ଭର ବାଉନବ ଆହେ ମହାଭୁଜଟେକା
କେ ପିନ୍ଧି ବୁଲୁଛି ଖଣ୍ଡିଆ ଦରିଦ୍ର କାହା ମୁଣ୍ଡେ ସୁନାଟେକା ।୫।
କେହୁ ଦାନା ପାଇଁ ହୁଏ ହାଇ ହାଇ କେ ଭୁଞ୍ଜଇ ଶାଳିଅନ୍ନ
ଖଙ୍ଗ ମଣି ଶିଖରଙ୍କ ଗୌର ଦୁଃଖ ନ ଶୁଣି ମୁଦିଛ କର୍ଣ୍ଣ ।୬।

---

[ଆଠ]

## ଗୋବନ୍ଦ ସ୍ତୁତ

ହେ ଗୋବନ୍ଦ ବୃନ୍ଦାରଣ୍ୟ ମଦନ
ଫେଡ଼ଦଅ ମୋର ଭବବନ୍ଧନ । ଘୋଷା ।
ଭକତଙ୍କ ହୃଦ ସୁଖ ସଦନ
ନର୍ମଳ ପ୍ରେମ ଆନନ୍ଦ ବର୍ଦ୍ଧନ ।୧।
ଅସାର ସଂସାର ବାସନା ମାନ
ଛେଦ ଦକାଅ ମୋ କୃପା ନଧାନ ।୨।
ଚଖାଇ ଶାନ୍ତ ମଧୁ କୁ ବଦନ
ରଖାଅ ତବ ଭୃତ୍ୟ ସନ୍ନିଧାନ ।୩।
ଲୀଲା ରସମୟ ନନ୍ଦ ନନ୍ଦନ
ବପଦ ଭଞ୍ଜନ ଜଗଦ୍‌ବନ୍ଦନ ।୪।
ଦେଖାଅ ଶ୍ରୀରଙ୍ଗ ପଦ୍ମ ଚରଣ
ଖସାଅ ଗୌର ମନ୍ଦ ଆଚରଣ ।୫।

---

[ନଅ]

## ବଶ୍ୱମ୍ଭର ଜଣାଣ

(ତାଳ—ଆଠତାଳୀ)

ଆହେ ବଶ୍ୱମ୍ଭର ! ମୋର ଏ ଦୁରନ୍ତ ଦଶା ହର ॥ ଘୋଷା ॥
ଏ ଘୋର ସଂସାର ଦଶୁଛି ଅନ୍ଧାର ହେଉଛି ଅସ୍ଥିର ସଦା ପ୍ରାଣ
କୃପାସିନ୍ଧୁ ହର ଶ୍ରୀଚରଣ ତରୀ ଦାନରେ ଦାସକୁ କର ତ୍ରାଣ ।୧।

ହିଂସାକୁଟ ଦ୍ୱେଷ ଆଦି ନାନା ଦୋଷ ଅଶେଷ କଳୁଷ ମୁଁ ବହିଛି
ମାୟା ମୋହଦ୍ୱନ୍ଦ୍ୱେ ପଡ଼ି ନରନନ୍ଦେ କଲବଲ ଏକା ହେଉଅଛି ।୨।
ଅବଳର ବଳ ଦୁଃଖୀର ସମ୍ବଳ ଶରଣ ବତ୍ସଳ ଘବତ୍ରାହି
ମହାବାହୁ ମହା ମହିମାବନ୍ତ ହେ ସଦା ସଙ୍କଟରୁ କର ତ୍ରାହି ।୩।
ପ୍ରଭୁ ଆଦିମୂଳ ତୁମ୍ଭେ ଅନୁକୂଳ ହୁଅ ଯାରେ ତାର କିବା ଭୟ ?
ଦୁବଟାକୁ ଦାରୁ କର ମହାମେରୁ ଶୁଣିଛୁ ପୁରାଣେ ଲୀଳାମୟ ।୪।
ନୀଳାଦ୍ରି ସାମନ୍ତ କେତେ ହନ୍ତସନ୍ତ ହେବ ଆଉ ଏ ଜଞ୍ଜାଳେ ପଡ଼ି
ବାରେ ଅନୁକମ୍ପା ନ ହେଉଛି କମ୍ପା ତନ ମଣୁଅଛି ଷୋଳଘଡ଼ି ।୫।
ଏଡ଼େ ପ୍ରଭୁ ହୋଇ ନ ଶୁଣ ଗୋସାଇଁ ଭୃତ୍ୟର ଗୁହାରି ଡାକ ଥରେ
ଭବ ଦୁର୍ବାସନା ଅନର୍ଥ ଘ୍ରବନା ପ୍ରବଳ ହେଉଛି ହୃଦୟରେ ।୬।
ଯାମଳା ଭଞ୍ଜନ ଗରବ ଗଞ୍ଜନ ମାନସ ରଞ୍ଜନ ବ୍ରଜବଧୂ
ଅଭୟ ଦାୟକ ଆଭର୍ତ୍ତ ନାୟକ ଇଚ୍ଛାମୟ ହରି କୃପାସିନ୍ଧୁ ।୭।
ବାହ୍ମ ଜନାର୍ଦ୍ଦନ ଶ୍ରୀମଧୁସୂଦନ ଆଶା ପୂର୍ଣ୍ଣକର ଦଇତ୍ୟାରି
ଗଉରଚରଣ ଦୁଷ୍ଟ ଆଚରଣ ଧ୍ୱଂସିଦିଅ ପାପ ତାପହାରୀ ।୮।

———

[ଦଶ]

## ଦୀନବନ୍ଧୁ ଜଣାଣ

ଦୀନବନ୍ଧୁ ଦୁରିତ ନାଶନ ହେ ଶ୍ରୀ ଦେବାଧି ଦେବରାଜେ
ଅରକ୍ଷ ରକ୍ଷଣ ବୋଲି ପରା ତୁମ୍ଭ ମହିମା ଡିଣ୍ଡିମ ବାଜେ ॥ଘୋଷା॥
କରପଦ୍ମ ଯୋଡ଼ି ସ୍ତୁତି କରୁଥାନ୍ତି ବ୍ରହ୍ମାଦି ଦେବ ସମାଜେ
ତେତେ ବଡ଼ପଣ କେ ଘେନି ଗଲା କି ଫେଡ଼ି କହୁନାହିଁ ଲାଜେ ।୧।
ଯେଉଁ ଶ୍ରୀଭୁଜକୁ ରଥାଙ୍ଗ କମଳ ଶଙ୍ଖ ଗଦାବର ସାଜେ-
ସେ ଅସ୍ତ୍ର ଛଡ଼ାଇ କେ ଘେନି ଗଲା କି ତୁଚ୍ଛାହାତେ ଅଛ ବ୍ୟାଜେ ।୨।

ଯେବଣ ଚନ୍ଦନ ଅର୍ଗଳ ଗଳବା ପାଇଁ ମନା ଦେବସଭେ
ଏମନ୍ତ ଶ୍ରୀରତ୍ନ ସିଂହାସନ ଅଧିକାରୀ କେ ହେଲା କି କାର୍ଯ୍ୟେ ।୩।
ବଡ଼ ଠାକୁରଙ୍କୁ ସାନ କରିବାକୁ କ୍ଷମ କେ ଶ୍ରୀକ୍ଷେତ୍ର ରାଜ୍ୟେ
କପାଁ ନ କହୁଛ ମଉନେ ରହୁଛ ଦେଖି ମୁଁ ହୁଏ ଥକା ଯେ ।୪।
କେତେ ସୁପ୍ରସନ୍ନେ ଦାଉ ଦାଉ ପଣେ କଳାଶ୍ରୀମୁଖ ବିରାଜେ
ଗୌରଦ୍ୱିଜଠାରେ କେବଣ ଅହଂନ୍ତା ଆଜ୍ଞାହେଉ ଦେବରାଜେ ।୫।

———

[ଏଗାର]

## ଜନାର୍ଦ୍ଦନ ଜଣାଣ

(ରାଗ ଚୋଖିପରଜ, ଆଠତାଳୀ)

ବିପଦକାଳରେ ଡାକିଲେ କାତରେ ସାହାହୁଅ ଜନାର୍ଦ୍ଦନ ।ଘୋଷା।
ଶ୍ରୀଚରଣ ଭେଳା ଦେଇ ଚକାଡ଼ୋଳା ଉଦ୍ଧର ପାତକୀ ନରେ
ଅଥଳ ଭବସାଗରୁ ପାରି କରି କୋଳକୁ ନିଅ ସାଦରେ ।୧।
ଧନର ସମ୍ପଦ ଏକା ତୁମ୍ଭ ପଦ ଆହେ ଆର୍ତ୍ତି ଆର୍ତ୍ତିହାରି
ଅଖିଳ ସଂସାର ମୋହନ ମୂରତି ଶ୍ରୀ ବୃନ୍ଦାରଣ୍ୟ ବିହାରୀ ।୨।
ଅନନ୍ତ ଶରଦ୍ଘନ ଚିନ୍ମୟ ସୁରସମୟ ନିତ୍ୟ ସନାତନ
ସକଳ ଜୀବଙ୍କ ପ୍ରେମାନନ୍ଦ ସୁଖଦାୟକ ବଶି ମୋହନ ।୩।
ଭକତ ବତ୍ସଳ ତୁମ୍ଭେ ଆଦିମୂଳ ଚଉବର୍ଗ ଦାମି ଦରି
ଗୌର ଦ୍ୱିଜକଥା ନ କର ଅନ୍ୟଥା ଶୁଣ ବାରେ କର୍ଣ୍ଣ ଡେରି ।୪।

———

[ବାର]

## ନୀଳଚକ୍ର ଦର୍ଶନ

ନୀଳଚକ୍ରେ ହୋ ଦେଖ ଉଡ଼ୁଛି ବାନା
ପତିତପାବନ ନାମ ଟି ଯା ନାଁ ॥ ଘୋଷା ॥

ଆସ ଆସ ବୋଲି ଯାତ୍ରୀ ମାନଙ୍କୁ
ଡାକୁଅଛି ପରା ସଙ୍କେତ ଅନା,
ନେତ ଧ୍ୱଜାବର ଉଡ଼ି ଫରହର
ଉଡ଼ାଇ ଦେଉଛି ଭବଯାତନ ।୧।

ପଞ୍ଚକୋଶୀ ଯାଏଁ ଜନେ ଦେଖାଯାଏ
ଦର୍ଶନେ କଳୁଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବରାଷ ସିନା ।୨।

ସଲକ୍ଷ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟମଣ୍ଡଳରେ କାହିଁ ଅଛି ନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେ କଳନା ।୩।

ପାପଛଡ଼ା ପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା
ଆଗୃଣ୍ଡାଳ ଦ୍ୱିଜ ପଙ୍ଗତେ ଭୁଞ୍ଜିବା
ବଡ଼ ଆଚମ୍ବିତ ଲାଗଇ କି ନା ।୪।

ଗୌରଦ୍ୱିଜ ଭଣି ଶ୍ରୀକ୍ଷେତ୍ରେ ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା ବଳଆର ବାହା
ସମ୍ପୂର୍ଣ୍ଣ କରନ୍ତୁ ମନ କାମନା ।୫।

———

[ତେର]

## ଶ୍ରୀ ଜଗନ୍ନାଥଙ୍କ ଦର୍ଶନ

(ରାଗ ଭାଟିଆରୀ, ତାଳ ଖେମଟା)

['ଦେଖ ଗୋ ସଙ୍ଗାତ ବ୍ରଜରାଜସୁତ' ବୃତ୍ତରେ]

ସଖି ! ନବଘନ କାଳିଆ ବଦନ
କି ଶୋଭା ଦିଶୁଛି ଅନା ଗୋ
ଏହି ପରା ବୃନ୍ଦା— ବନ ଧେନୁଚରା
ନନ୍ଦର ନନ୍ଦନ କହ୍ନା ଗୋ
ଭଲେ କର ଅନୁମାନ,
ସେହି କୁଳବୁଡ଼ା ଏ ନିଦାନ ଗୋ ।୧।
ବାକଟକୁଟିଆ, ବସନଲୁଟିଆ
ଖୋଟିଆ ପଣ ତ ଜାଣ ଗୋ
ଗୋଟି ଗୋଟି କରି ଗୋପ କନିଆଁଙ୍କୁ
ଯେତେ କରେ ହଇରାଣ ଗୋ
ଏକୁଟିଆ ହୋଇ ଠିଆ,
ବାଟେ ଘାଟେ ଭାଙ୍ଗଇ ମାଠିଆ ଗୋ ।୨।

କହିଲେ ହୋଇବ ପୋଥିଟାର ପାଠ
ତା ଯେଉଁ ଅପାଠ ଯାକ ଗୋ,
ଦହି ଦୁଧ ଯେତେ ଚୋରାଇ ଗିଳଇ
ସଭିଁକ କରି ଅବାକ ଗୋ
ପୁଣି ପୁଣି ବଂଶୀ ଫୁଙ୍କି
ବାଇ ଭୂତ ଲଗାଏ ଗୋପୀଙ୍କି ଗୋ ।୩।
ଏତେ ଗୁଣ ଜାଣି ପଣ୍ଡିତ ଜାନରେ
ଗୋଣ୍ଡ ବାନ୍ଧିଥିଲେ ବୋଲ ଗୋ
କଦର କରଣ ପଳାଇ ଆସି ତ
ଏଠାରେ ବଖାଣେ ବେଲ ଗୋ
ରଜା ପରି ଖଜା ଖାଇ,
ମଜାମାରୁଛୁ ଦେଖାଇ ଛଇ ଗୋ ।୪।
ଆମ୍ଭ ଠାକୁରାଣୀ କୁଞ୍ଜ ସାମନ୍ତାଣୀ—
ଙ୍କର ଏ ପରା ବେଠିଆ ଗୋ
ଚଉଟ ଲମ୍ପଟରେ ମାପ ନକଟରେ
ହୋଏ ଯମୁନା ତୋଠିଆ ଗୋ
ଏବେ ରତ୍ନ ସିଂହାସନେ,
ବସି ରହିଛୁ ମହା-ମଉନେ ଗୋ ।୫।
ପୂରୁବ କଥା କ ମନେ ଭାବ ତାର
ଦୂରୁ ପକାଉଛୁ ହସି ଗୋ
ଦୁରୁଜନ କହ୍ନା ମୂରୁକ ହସାରେ
ଏତେ ଲୋକ ଛନ୍ଦ ରସି ଗୋ
ଧନ୍ୟ ଧନ୍ୟ ଏ କାଳଆ,
ଗୌର ଦ୍ୱିଜର ଗଳାମାଳଆ ଗୋ ।୬।

———

[ଚଣ୍ଡଦ]

## ଚନ୍ଦନଯାତ୍ରା ଗୀତ

(ଜଗନ୍ନାଥ ଦନ୍ତ ପଲଙ୍କ ଡେଙ୍ଗ ପ୍ରଭୁ ନରେନ୍ଦ୍ର ଗୃହେ ଗମନ—ବୃତ୍ତ)

ଶ୍ରୀରାଧା ମୋହନ—ଶ୍ରୀରାଧା ମୋହନ !!

ଚନ୍ଦନ ଯାତ୍ରାକୁ ବିଜୟେ ସଧୀରେ
ଦେଖ ସଖି କ ଯତନ । ଘୋଷା ।

ମଣି ବିମାନରେ ତ୍ରିଭଙ୍ଗ ଠାଣିରେ
ଉତ୍ତର ଜଗୁଜୀବନ
ବାମେ ବାମାଧନୀ ଶ୍ରୀଭାନୁ ନନ୍ଦନୀ
ଚଉପାଶେ ସଖୀଗଣ ।୧।

ବିମ୍ବାଧରେ ହାସ ଝରଇ ପୀୟୂଷ
କ ଶୋଭା ଚନ୍ଦ୍ର ବଦନ
ଅଗୁରୁ କର୍ପୂର ଚନ୍ଦନ ଚର୍ଚ୍ଚିତ
ମୃଦୁମୟ ଅପଘନ ।୨।

ନୀଳ ପୀତ ଝୀନ ପଟ ପରିଧାନ
ଅତି ଅପୂର୍ବ ଘଟନ
ନବ ନଟବର ବେଶ ମନୋହର
ନାହିଁ ନା ତ୍ରିପୁ ଭୁବନ ।୩।

ଗଳେ ବନମାଳ କର୍ଣ୍ଣରେ କୁଣ୍ଡଳ
ଦୋହଲି ହରଇ ମନ
ଗ୍ରୁରୁକରେ ବଂଶୀ ଧରି ଗୋପଶଶୀ
ମୋହୁଛନ୍ତି ଭକ୍ତଜନ ।୪।

ଦେବଙ୍କ ଦୁନ୍ଦୁଭି ବାଜଣା ସହିତେ
ନାରଦ ବୀଣା ବାଦନ
ଶଙ୍କର ଡମ୍ବରୁ ଘନ ଘନ ବାଇ
ଭବେ କରନ୍ତି ନର୍ତ୍ତନ ।୫।
ଅପସରୀବୃନ୍ଦ ହୋଇଣ ଆନନ୍ଦ
ବୃଷ୍ଟି କରନ୍ତି ସୁମନ
ଗୌର ଦ୍ଵିଜ ତହିଁ ଶ୍ରୀଙ୍ଗମୁରେ ରହି
କରେ ଚାମର ବ୍ୟଜନ ।୬।

———

[ପନ୍ଦର]

## ଦେବସ୍ନାନୋତ୍ସବ ଗୀତ

( ରାଗ ବଙ୍ଗଳାଶ୍ରୀ, ଆଠତାଳୀ )

ଦୀନବନ୍ଧୁ ଦୁରିତନାଶନ ହେ ଶ୍ରୀଦେବାଧି ଦେବରାଜ
ମହାମହୋତ୍ସବ କରିବାକୁ ଦେବ ! ସ୍ନାନମଣ୍ଡପକୁ ବଜେ୍ଯା ପଦ ।
ତେଜ ରତ୍ନସିଂହାସନ ମହାପ୍ରଭୁ ହେଜ ପତିତଙ୍କ ଦୁଃଖ
ନରେଖମାନେ ନିସ୍ତାର ହୋଇଯିବେ ନିରେଖି କଳାଶ୍ରୀମୁଖ ॥
ଦିବ୍ୟବେଶ ହୋଇ ଦୟିତା ସାମନ୍ତ ଦେଉଳରୁ ବାହାରିଲେ
ମସ୍ତକରେ ହସ୍ତ ନିବେଶି ସମସ୍ତ ଜନମାନେ ଜୁହାରିଲେ ॥
ବାଜେ ଜୟଶଙ୍ଖ ମଙ୍ଗଳ ମହୁରୀ ମର୍ଦ୍ଦଳ ବୀର କାହାଳୀ
ପୁରୁଷମାନଙ୍କ ହରିବୋଲ ଧ୍ଵନି ନାରୀଙ୍କର ହୁଳହୁଳି ॥
କେହୁ ଧରେ ଛତ୍ର ଆଲଟ୍ଟ ଚାମର କେ ଧରେ ଢାଳଲ ଚାମର
ଆଗେ ମାଳମାଳ ଉଡ଼ୁଛି ଚାମର ଆଲଟଧାରୀ ଅମର ॥

ଛଡ଼ବାଡ଼ ଧରି ଡାକେ ପଡ଼ିଆରି ମହିମା ମହିମା ବାଣୀ
ସ୍ନାନମଣ୍ଡପକୁ ବିଜେକରି ପ୍ରଭୁ ତ୍ରୈଲୋକ୍ୟର ଚିନ୍ତାମଣି ॥
ଖଟଣି ସେବକ ପଥ ସମାର୍ଜନ୍ତି ପକାନ୍ତି ପାହାଡ଼ା ଚୂଳ
ପହଣ୍ଡି ବିଜୟେ କରନ୍ତି ଗୋବିନ୍ଦ ଧୀରେ ଧୀରେ ଟଳି ଟଳି ॥
ରତନ ମଣ୍ଡପ ଖୁରୁ ଚନ୍ଦ୍ରାତପ ଚିତ୍ର ବିଚିତ୍ରରେ ତୋରା
ଯହିଁରେ ପାବଚ୍ଛ ବସିଅଛି ସ୍ୱଚ୍ଛ ଶୁଦ୍ଧ ବ୍ରହ୍ମଜାତ ହୀରା ॥
ଜମ୍ବୁନଦ ହେମ ବାଡ଼େ ମନୋରମ ଆଉଜିବା ଅପସର
ଭାଇଭଗ୍ନୀ ସଙ୍ଗେ ବେନିକରି ରଙ୍ଗେ ବିଜୟେ ଜଗୁ ସୋଦର ॥
ଇନ୍ଦ୍ର ଚନ୍ଦ୍ରଦେବ ନୈଋତ ବରୁଣ ସୁର ସିଦ୍ଧ ବିଦ୍ୟାଧରୀ
ଶ୍ରୀଛାମୁରେ ଆସି ସେବା କରୁଛନ୍ତି ମାନବ ମୂରତି ଧରି ॥
ଅନେକ କନକଘଟ ପୂର୍ଣ୍ଣକରି ଆକାଶର ଗଙ୍ଗାପାଣି
ଜୟ ଜୟ ଜଗନ୍ନାଥ ବାଣୀ ଭଣି ଶିରେ ନାଉଡ଼ନ୍ତି ଆଣି ॥
ବ୍ରହ୍ମା ଶିବଙ୍କୁ ଲଭ୍ୟ ନୋହିଥିଲା ଯେ ସେହି ସେ ଚରଣାମୃତ
ଏବେ ଇଚ୍ଛାସୁଖେ ପାନକରି ଲୋକେ ହେଉଛନ୍ତି କୃତକୃତ୍ୟ ॥
ଅତି ସମ୍ଭ୍ରମରେ ସ୍ନାନ ମହୋତ୍ସବ ବିଧାନକୁ ବଢ଼ାଇଲେ
ଧୂପଦୀପ ବନ୍ଦାପନା ଦେବାର୍ଚ୍ଚନ କର୍ପୂର ଆଳତି କଲେ ॥
ପଣ୍ଡା ପଶୁପାଳ ନାନା ଧଣ୍ଡାମାଳ ଶ୍ରୀଅଙ୍ଗରେ ଲମ୍ବାଇଲେ
କଳା କରିବରବେଶ ଧରି ହରି ବାହୁଡ଼ା ବିଜୟ କଲେ ॥
ବିଘ୍ନରାଜ ଉପାସକ ଏକଦ୍ୱିଜ ଭକ୍ତ ପୂର୍ବେ ଥିଲା ଆସି
ଏ ମହାପ୍ରଭୁ ନୁହନ୍ତି ବୋଲି କ୍ରୋଧେ ଯାଉଥିଲା ସେହୁ ରୁଷି ॥
ଜାଣି ତାର ମନ କରୁଣାନିଧାନ ଆଣି ପାଶେ ରଖାଇଲେ
ଗଜବଦନ ଶୋଭା ବେନିନୟନ ତାର ଆଗେ ଦେଖାଇଲେ ॥
ସେହିଦିନଠାରୁ ଗଜବେଶ ହେଲେ ଭକ୍ତବନ୍ଧୁ ଭାବଗ୍ରାହୀ
ବଡ଼ଦେଉଳକୁ ଝୁଲିଝୁଲି ବିଜେ ଠାବେ ଠାବେ ରହି ରହି ॥

ଅନେକ ଜଳ ଅଭିଷେକ ହେବାରୁ ଶ୍ରୀଅଙ୍ଗ ଅଳସ ଯହୁଁ
ଲୋକତ ବେଭାରେ ଅଣସର ଘରେ ଗୁପତେ ରହିଲେ ତହୁଁ ॥
ଭକ୍ତଙ୍କ ଆକୁଳ ଜାଣି ଅନୁକୂଳ କଲେ କରୁଣାନିଧାନ
ଅଣସର ଘର କରଣ ଅନ୍ତର ଗୁଣ୍ଡିଚ୍ୟାଯାତ୍ରା ବିଧାନ ॥
ନବଜଳଧର ରୂପ ମନୋହର ଶ୍ରୀମୁଖମଣ୍ଡଳ ଶୋଭା
ଜଗତମୋହନ ବେଶ ଧରି ହରି ମଣୋହି କୋଠାରେ ଉଭା ॥
ସେ କାଳର ଶୋଭା ମଣୋହି ଉତ୍ସବ ଦେଖିଛି ଯାହାର ଆକ୍ଷି
କବ ଛାର କାହିଁ ସେ ଛବ ବର୍ଣ୍ଣିବ ଦେହି ତାର ଏକା ସାକ୍ଷୀ ॥
କାଲି ଶ୍ରୀଗୁଣ୍ଡିଚ୍ୟ ଯାତ୍ରା ହେବ ବୋଲି ଆଜଠାରୁ ହୋଇ ସଜ
ନନ୍ଦିଘୋଷ ରଥେ ବିଜୟ କରିବେ ବିଶ୍ୱାରଣ ବେନିଭୁଜ ॥
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପରାକ୍ରମ କେହି ନ ଜାଣନ୍ତି କଛି
ଧର୍ମ ଅର୍ଥ କାମ ମୋକ୍ଷ ଏ ଚତୁର୍ବର୍ଗ ଠାବେ ଠାବେ ପୂରିଅଛି ॥
କେ କହିପାରିବ ଶ୍ରୀକ୍ଷେତ୍ର ମହିମା ଶେଷମୁଖେ ନୋହେ ଶେଷ
ଦେବଙ୍କୁ ଦୁର୍ଲ୍ଲଭ ମର୍ତ୍ତ୍ୟର ବୈକୁଣ୍ଠ ଲୀଳା ଅଶେଷୁଁ ଅଶେଷ ॥
ହେ ଜଗନ୍ନିବାସ ! ମୋର କ୍ଷେତ୍ରେ ବାସ କରିବାକୁ ବଡ଼ ଆଶ
ନିଶିଦିଶି ଏହି ଅନୁଜ୍ଞା ମାଗଇ ଗଉରଚରଣ ଦାସ ॥

---

[ଷୋହଳ]

## ପହଣ୍ଡି ବିଜେ ଗୀତ

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି
ବରଷକେ ଥରେ ବିଜୟେ ରଥରେ
ପତିତ ତାରିବା ପାଇଁକି । ଘୋଷା ।

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି ଦର୍ଶନ କରିବା ପାଇଁକ
ଅନେକ କାଳର ଦୁଃଖ ଉପେକ୍ଷିବେ କଳାଶ୍ରୀମୁଖକୁ ଗୃହିଁକା୧।
ଆଗେ ଗଜପତି ଉଭାହୋଇଛନ୍ତି ଶିରେ ଯୋଡ଼ି କର ଦୁଇକ
ସୁନା ଶୋଧଣୀରେ ମାର୍ଜନା କରନ୍ତି ପହଣ୍ଡି ବିଜୟେ ଭୂଇଁକା୨।
ଛତିଶା ନିଯୋଗେ ଉଭାହୋଇଛନ୍ତି ଯେ ଭଜନ ହେବେ ଯହିଁକ
ଆକାଶେ ଇନ୍ଦ୍ର ଅମରବୃନ୍ଦ ପୁଷ୍ପ ବୃଷ୍ଟି କରୁଛନ୍ତି ତହିଁକ ।୩।
ତାଳଧ୍ୱଜ ରଥେ ବିଜୟ କରନ୍ତୁ କହିଦିଅ ବଡ଼ ଭାଇଙ୍କି
ଦେବୀରଥ ବଡ଼ ସୁନ୍ଦର ଦିଶିବ ଭଉଣୀ ହଳଦମୁହାଁଙ୍କି ।୪।
ଝୁମ୍ପେ ପଛରେ ପଛକେ ଆସୁଥାଅ କରି ନବରଙ୍ଗ ଛଇକ
ମଥା ଦୋହଲାଇ ଟାହିଆ ହଲାଇ ଠାବେ ଠାବେ ରହି ରହିକା୫।
ସେବକମାନଙ୍କ ଅଙ୍ଗ ଶ୍ରମଝାଳ ଗମଗମ ପଡ଼େ ବହିକ
ଝିଙ୍କାଝିଙ୍କି କରିବାରୁ ବାଧିଥିବ ପରା ସୁକୁମାର ଦେହିକ ।୬।
ଦେବଦାସୀ ନାଟ ଉତ୍କଟ କରନ୍ତି ତାଡ଼ା ଧି ନିକଟ ଥେଇକ
ବାଜେ ଖୋଳତାଳ ମହୁରୀ ମଞ୍ଜୁଳ ମର୍ଦ୍ଦଳ ତାଧେଇ ଧେଇକା୭।
କା ନେସୁ ଲୋତକ ବହେ ଥକଥକ କେତେ ନାଚେ ଗୀତ ଗାଇକ
ଜଗମୋହନଆ ଜଗତଜନଙ୍କୁ ଲଗାଇଛୁ ପ୍ରେମବାଇକ ।୮।
କେତେ ଖାଇବ କଦଳୀ କରମଙ୍ଗା ସରପୁଳି ଖଣ୍ଡ ଖଇକ
ନାଡ଼ୀ ବଡ଼ ଗଜା ମନୋହର ଖଜା ଛେନାପୁର ବସାଦହିକା୯।
କେକେତେତମାନି ଗୀତଶୁଣାଇବେ କେକେତେକରିବେଟାହିକ
ଖଣ୍ଡି ଭରଦୁଃଖ ମଣ୍ଡି ଦେବ ଆଜ କ୍ଷେତ୍ର ବଡ଼ଦାଣ୍ଡ ସାହିକା୧୦।
ନ ଦିନ ଅବଧି ଲକ୍ଷ୍ମୀଙ୍କି ପ୍ରବୋଧି ଆସିଅଛ ଦେଖ କହି କ
ଭୁଲିହୋଇ ଆସ ଭଳିଅଛ ଟିକ ଜଳପତିଜେମାଦେଈ କ ।୧୧।
ଆହେ ଚକାଡୋଳା ! ବୃନ୍ଦାବନ ଲୀଳା ମନେ ଆଉ ପଡ଼ୁ ନାହିଁ କ
ଆସ ବଂଶୀଧରୀ ! ଚରାଇବ ପରା ଜଗତ ଭକତ ଗାଈଙ୍କି ।୧୨।

ପାପ ଅନ୍ଧକାର ଘୁର କି କରିବ ଆଉ ସେ ପାଇବ ଛୁଇଁ କି
ମାଳଶାଇଳଶିଖରୀ ପୂର୍ଣ୍ଣଚନ୍ଦ୍ର ଆସୁଛନ୍ତି ପରା ଉଇଁ କି ।୧୩।
ଅପଲକ ଦୃଷ୍ଟି କର ରେ ମାନସ ! ଆଉ ଏ ସମୟ ପାଇ କି
ଗଉର ଚରଣ ପଶିଲୁ ଶରଣ ନନ୍ଦଘୋଷରଥସ୍ଥାଇକି ।୧୪।

———

[ ସତର ]

## ରଥଯାତ୍ରା ଗୀତ

( ଶ୍ୟାମ ନାଗର ହେ ! ଏ ବେଶ ହୋଇବ ନାହିଁ—ବୃତ୍ତ )

ପ୍ରାଣ ସଙ୍ଗାତ ରେ ! ନୟନ ପୂରାଇ ଅନା
ଫରହର ହୋଇ କେମନ୍ତେ ଉଡ଼ଇ
ତିନ ରଥେ ତିନ ବାନା । ଘୋଷା ।
ତାଳଧ୍ୱଜ ଦେବ— ଦଳନ ଶ୍ରୀନନ୍ଦ—
ଘୋଷ ନାମ ସୁଘଟନା
ଭାଇଭଗ୍ନୀ ସଙ୍ଗେ ବିରାଜେ କି ରଙ୍ଗେ
ନାଗର ଛଇଲ କହ୍ନା । ୧ ।
ଡାହାଣେ ଶ୍ରୀବଳ— ଭଦ୍ର ଦେବରାଜେ
ବଡ଼ ଠାକୁର ଯାହା ନାଁ
ବାମେ ନନ୍ଦଘୋଷେ କି ସୁନ୍ଦର ଦିଶେ
ନିପଣ୍ଟ କାଳିଆ ସୁନା । ୨ ।
ବେନିଭାଇ ମଧ୍ୟେ ହରିଦ୍ରାବରଣୀ
ସୁଭଦ୍ରାଈ ଚନ୍ଦ୍ରାନନା
ଗୋକୁଳ ନବରେ ଯିବାକୁ ଭାବରେ
ହୋଇଛନ୍ତି ଉନମନା । ୩ ।

ତ୍ରୈଲୋକ୍ୟମୋହନ ଶ୍ରୀରୂ ଅପଘନ
ଶୋଭା ନୁହଇ କଳନା
ଉପମା ଦେବାକୁ ତ୍ରିଭୁବନରେ ନାହିଁ
ଯା ସୌନ୍ଦର୍ଯ୍ୟ ଅତୁଳନା ।୪।
ଟାହୁଆ ଝୁଲଇ ଗୁଡ଼ିକ ଫୁଲର
କି ମନେ କର ଭାବନା
ଚହଣି ବଦନେ କରୁ ଦେବଗଣେ
ପୂରାଏ ଭକ୍ତ କାମନା ।୫।
ସିହଦୂଅରୁ ଟ— ରଥା ବାଲି ଯାଏଁ
ଶ୍ରୀକ୍ଷେତ୍ରବର ପାଟଣା
ଶ୍ରୀପୁରୁଷୋତ୍ତମ ଯାହାକୁ ବୋଲନ୍ତି
କାହାକୁ ନାହିଁ ବାରଣା ।୬।
ଲକ୍ଷ୍ମୀଭାତଖିଆ ଜଗନ୍ନାଥିଆର
କଉତୁକ ବୁହାମଣା
ଜନମାନଙ୍କର ଗହଳ ଚହଳେ
କେ କାହିଁ ହୁଅନ୍ତି ବଣା ।୭।
ଆଜ କି ଆନନ୍ଦେ ଉଛୁଳ ପଡ଼ୁଛି
ଗୁଣ୍ଡିଚା ପାଟ ଅଗଣା
ଗହ ଗହ ନାଦ ବାଜେ ନାନା ବାଦ୍ୟ
କେ କରିବ ତା ବର୍ଣ୍ଣନା ! ।୮।
ଆମ୍ଭ ଠାକୁରାଣୀ ଗୁହିଁ ରହିଛନ୍ତି
କରି ମନ୍ଦର ମାର୍ଜ୍ଜନା
ଏ କଳା ଶ୍ରୀମୁଖ ଦରଶନ କରି
ହରିବେ ହୃଦ ଯାତନା ।୯।

ଆମ୍ଭେ ସର୍ବ ସଙ୍ଗୀ ହୁଳହୁଳି ଦେଇ
କରିବା ଗୋ ବନ୍ଦାପନା
ଗୌରଦ୍ୱିଜ କହ ସଦାପଛେ ରହ
ଛଡ଼ାଇବ ଆବର୍ଜ୍ଜନା ।୧୦।

———

[ଅଠର]

## ରଥଚଳା ଗୀତ

ନୀଳାଦ୍ରି ସିଂହ ! କି ଲୀଳା ଲଗାଇଛ ଆଜିକି
ନିସ୍ତାରିବାପାଇଁ ପତିତଜନଙ୍କୁ ବିସ୍ତାରିଛ ବେନପାଣିକି । ଘୋଷା ।
ଏକା କରି ଯାହା ଗୁଣ୍ଡ଼ି ଆସିଅଛ ମହାଲକ୍ଷ୍ମୀ ଠାକୁରାଣୀଙ୍କି
ସେ ଏବେ କି ଦୁଃଖେ ବସି ମ୍ଳାନମୁଖେ ଚିରନ୍ତି ନଖେ ଧରଣୀକି ॥
ତୁମ୍ଭେ ନନ୍ଦିଘୋଷ ପୃଷ୍ଠେ ବସି ହୃଷ୍ଟେ କରି କଟାକ୍ଷ ବୃନ୍ଦାଣୀକି
ଦର୍ଶନ ମାତ୍ରକେ ଅଶେଷ କଲୁଷମାନଙ୍କୁ ପକାଅ ହାଣିକି ॥
ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା ପଛରେ ଛଇଳମଣିକି
ତିନି ଗୁଣେ ସ୍ଥିତ ନିର୍ଗୁଣ ମୂରତି କେ ପାରେ ସେ ତତ୍ତ୍ୱ ଜାଣିକି ॥
ଜକ ଜକ ନୀଳ ଶ୍ରୀମୁଖ ଝଟକି ନିନ୍ଦେ ଇନ୍ଦ୍ରନୀଳମଣିକି
କେମନ୍ତ ସୁନ୍ଦର ରଙ୍ଗିମା ଅଧର ବନ୍ଧୁଲି କୁସୁମ ଜିଣି କି ॥
ବିଶ୍ୱ ବ୍ରହ୍ମାଣ୍ଡଯାକ ଶୋଭା ଲୁଣ୍ଠି ସାର ସାର ଗୁଣି ଗୁଣି କି
ବିଧିର ବିଧିରି ଗଢ଼ିବଦନ ଏ ରୂପ ଅଛୁ ନିରମାଣିକି ॥
ରଥର ଦଉଡ଼ି ଲମ୍ବେ ଧାଡ଼ ଧାଡ଼ କି ବାସେ ବାସୁକି ଫଣୀ କି
ନର ସ୍ୱରୂପେ ଅମରଗଣ ମିଶି ସଧୀରେ ଧରନ୍ତି ଟାଣିକି ॥
ଚହ କଟ କଟ ନୀଳେନ୍ଦ୍ର ପ୍ରକଟ ଘଣ୍ଟି ନାଦ ଟିଣି ଟିଣି କି
ବାଜେ ଦୁମୁ ଦୁମୁ ଦୁନ୍ଦୁଭି ମର୍ଦ୍ଦଳ ବେଣୁ ବୀଣା ଅଳାବଣୀକି ॥

ଛନ୍ଦ ଗୁମ୍ଫର କଳସ ମନୋହର ବଚନ ରଥ ସାଜେଣି କ
କରି ଘୁଂ ଘୁଂ ଘୋଷ ଚଳେ ନନ୍ଦିଘୋଷ କମ୍ପାଇଦିଏ ଧରଣୀକ ॥
ଗର୍ଜୁ ନାହିଁ ତର୍ଜୁ ଅଛି ସେ ପ୍ରକୋପେ ବର୍ଜୁଛି ପାତକଶ୍ରେଣୀକ
ପଳା ତୁ ଅଠର ନଳାଠାରୁ ବଳ ନ ଆସିବୁ ଆଉ ଏଣିକ ॥
ଜଗତକରତା ଚଉବର୍ଗଦାତା ଫିଟାଇ ଐଶ୍ୱର୍ଯ୍ୟଖଣିକ
ପ୍ରେମଚିନ୍ତାମଣି ସମ୍ପତ୍ତିକ ଆଣି ଦାଣ୍ଡରେ ଦେଇଛ ବୁଣି କ ॥
ଦରଶନେ ଆଜ ଆନନ୍ଦ ଉଛୁଳେ କେହୁ ଘଷେ ଜୟବାଣୀକ
ଯାରମନେ ଯାହା ଯାହା ଅଛି ତାହା ଜଣାନ୍ତି ସେ ଚିନ୍ତାମଣିଙ୍କି ॥
ଗଉର ଚରଣ ବୋଲେ ବାଟବାଣ ଟକାଉଛି ଥାଅ ଜାଣିକ
ମୋ ମରଣବେଳା ଜାଣିଚକାଡୋଳା ! ଦେଖାଇବ ଏହିଠାଣିକ ।!

---

[ ଉଣେଇଶ ]

## ଗୁଣ୍ଡିଚାଯାତ୍ରା ଗୀତ

ଆଗୋ ସଙ୍ଗାତ ! ଗୁଣ୍ଡିଚାଯାତ ଦେଖିଯିବା ଚଲ ଆସ ଗୋ
ବରଷା ଦେଖି ଭରସା ପାଉନାହିଁ ସହଜେ ଅଷାଢ଼ ମାସଗୋ ॥
ଗ୍ରାମନାମ ପୁରୁଷୋତ୍ତମ ବୋଲି ସେ ରଥ ନାମ ନନ୍ଦିଘୋଷ ଗୋ
ଅନାଥର ନାଥ ଗ୍ରାଡ଼ ଏବେ ଜଗନ୍ନାଥ ନାମ ପରକାଶ ଗୋ ॥
ବଂଶୀବଟ ଠାରୁ କଳ୍ପବଟ ଚଗ ସାତଶ ପଚିଶ କୋଶ ଗୋ
ନାରୀ ସୁକୁମାରୀ କେମନ୍ତେ ଚାଲିବା ପାଦ ହୋଇଯିବ ତ୍ରାସ ଗୋ ॥
ଗୋପେଥିଲାବେଳେ ଖାଇବା ବିନା ସେ ପାଉଥିଲେ ବଡ଼ କ୍ଲେଶଗୋ
ଦରଫୁଟି ଘିଅ ହରଡ଼ ଆମ୍ବିଲ ଏବେ କରୁଛନ୍ତି ଗ୍ରାସ ଗୋ ॥
ଆଉରି କଥା ଏ ଶୁଣାଯାଉଅଛି ବଡ଼ କଉତୁକ ରସ ଗୋ

ଶୂଦ୍ରଠାରୁ ଅନ୍ନ ଛଡ଼ାଇ ବ୍ରାହ୍ମଣ ଖାଉଛନ୍ତି ଅବଶେଷ ଗୋ ॥
କେମନ୍ତ ସୁନ୍ଦର ଦେଖିବା ତାଙ୍କର ଶ୍ରୀବଡ଼ଶିଙ୍ଗାର ବେଶ ଗୋ
ଦର୍ଶନମାତ୍ରକେ କୋଟିଏ କଲ୍ମଷ ହୋଇଯାଏ ପରା ନାଶ ଗୋ ॥
ଏକ ବଡ଼ମ୍ବନା କଥା ଅଛି ପୁଣ ଶୁଣିଲେ ମାଡ଼ିବ ହସ ଗୋ
କେମନ୍ତ ଲେଖା ରେ ସୁଭଦ୍ରା ଭଉଣୀ ଦଣ୍ଡେ ନ ଛାଡ଼ନ୍ତି ପାଶ ଗୋ ॥
ଚାଲ ଆମ୍ଭେ ସର୍ବେ ଯିବା ଠୂଳହୋଇ ଧରି କାଙ୍ଗାଳୁଣୀବେଶ ଗୋ
ପୁଛିଲେ କହିବା ଆମ୍ଭର ନିବାସ ନନ୍ଦ ମହାଖୁଣ୍ଡ ଦେଶ ଗୋ ॥
ରଙ୍ଗାଧର ବଡ଼ଠାକୁର ସୁଭଦ୍ରା ସିଂହାସନେ ଉପବେଶ ଗୋ
ସୁଦର୍ଶନ ସଙ୍ଗେ ଦର୍ଶନ କରିବା କଳା ଗାଇଟର ପାଶ ଗୋ ॥
ଆମ୍ଭ ଦୁଖ ସୁଖ ଜଣାଇ ଛାମୁରେ ଦେବା ଖଣ୍ଡେ ଦରଖାସ ଗୋ
ବୋଲିବା ନିଜ ଦାସୀରେ ଜ୍ଞେଷକଲେ ଅର୍ଜିବ କି ପଉରୁଷ ଗୋ ॥
ଯେବେ ତୁମ୍ଭେ ଆମ୍ଭ ସଙ୍ଗରେ ନ ଯାଇ କ୍ଷେତ୍ରରେ କରିବ ବାସ ଗୋ
ଶ୍ରୀବୃନ୍ଦାବନରେ କାହା ସଙ୍ଗତରେ ଆରମ୍ଭ କରିବୁ ରାସ ଗୋ ॥
ସୁବଳ ସୁଦାମ ସଖା ସଙ୍ଗତେ କେ କରିବ ଟି ପରିହାସ ଗୋ
ଧବଳୀ ଶାମଳୀ ଗାଈମାନଙ୍କର ମୁଖରେ କେ ଦେବ ଘାସ ଗୋ ॥
କଲେ ଅନୁକୂଳ ଗୋକୁଳ ଯୁବତୀ ପହରଣ ଝୀନ ବାସ ଗୋ
ଗୌରଦ୍ୱିଜ ବୋଲେ ମୋତେ ସଙ୍ଗେ ନିଅ ମୁଁ ପରା ତୁମ୍ଭରଦାସ ଗୋ ॥

------

[କେଉଁଏ]

## ଅଣସର ଚହଣ୍ଡି ଗୀତ

ପ୍ରଭୁ ଅଣସରରୁ ତେଜ ଅଳସ ଗରୁ
ଯେହ୍ନେ ମତ୍ତଗଜ ଗଡ଼େ ଗିରି ଶିଖରୁ ।୧।

ବେଢ଼ି ଦଇତାମାନେ ହୁଁ ହୁଁ କାର ଗର୍ଜ୍ଜନେ
ଟେକନ୍ତି ମହାମେରୁଙ୍କୁ ହରଷ ମନେ ।୨।
କନ୍ଧେ କେ ପିଠି ଭର ଦେଇ ଡାକନ୍ତି ଭର
ହରି ବୋଲ ଶବଦରେ ଉଚ୍ଛୁଳେ ଧର ।୩।
ପ୍ରଭୁଙ୍କର ପହଣ୍ଡି ଧୀରେ ଗୃଳବା ଖଣ୍ଡି
ଚାଲନ୍ତେ କମ୍ପଇ ବେନ-ସପ୍ତ ବ୍ରହ୍ମାଣ୍ଡ ।୪।
ପ୍ରଭୁ କନକ ଦଣ୍ଡ ଘେନଛନ୍ତି ମାର୍କଣ୍ଡ
କରେ ବେତ ଧରି ବ୍ରହ୍ମା ଛଡ଼ାନ୍ତି ଦାଣ୍ଡ ।୫।
ଦଶେ କେତେ ସୁନ୍ଦର କଲା ମୁଖ ସୁନ୍ଦର
ରତ୍ନ ଝରା ଘେନଛନ୍ତି ଗୋହ୍ମଣୀବର ।୬।
ନର ରୂପେ ଅମର ସର୍ବେ ଭକ୍ତ କମର
ଛତିଶା ନିଯୋଗ ସେବାକୁ ଆଗଭର ।୭।
ସେ ଯେ କୁବେର ଆସି ବୁଲେ ରତନ ରାଶି
ପବନ ଦେବତା ବାଞ୍ଛ ବାଞ୍ଛଣୀ ହସି ।୮।
ସେ ଯେ ବରୁଣ ଆସି କରେ ଛତ୍ର ଧରନ୍ତି
ଘନ ଘନ ଇନ୍ଦ୍ର ପୁଷ୍ପ ଦଅଇ ବର୍ଷି ।୯।
ଦିଗପାଳ ନିକର ସର୍ବେ ସେବା କଙ୍କର
ସ୍ତମ୍ଭରେ ମହିମା ଡାକ ଦଅନ୍ତି ହର ।୧୦।
ସେ ଯେ କଳପତରୁ ବାଜେ ଅନେକ ଘରୁ
ପାଟ ଡୋରି ଭକ୍ତ ଦିଜେ ଟିକନ୍ତି ଦୂରୁ ।୧୧।
ଶ୍ୱେତ ପଙ୍କଜ ଡୋଳା ଗୋପିଖବରେ ହେଲା
ଭାଇ ଭଗ୍ନୀ ସଙ୍ଗେ କରି ଯିବେ ସଙ୍ଗୋଳା ।୧୨।
ଆଜ ବରଡ଼କରେ ମନେ ପଡ଼ିଲା ଥରେ
ତିନଏ ଚଳବେ ଗୋପେ ତିନ ରଥରେ ।୧୩।

ହୋଇ ଦଇତା ମେଲା ଦେଖି ମାହେନ୍ଦ୍ରବେଳା
ପହଣ୍ଡିକୁ ଯୋଗାଇଲେ ଯାଠ ମୁଚୁଲା ।୧୫।
ପ୍ରଭୁ ପହଣ୍ଡି ଚଲା ଗୃହିଁ ଗୌର ବାଉଳା
ପାଦପଦ୍ମ ଲଗି ଫୁଟି ଉଡ଼ିଲ ଭୁଲା ।୧୬।

---

[ଏକୋଇଶ]

## ଗୁଣ୍ଡିଚା ବାଡ଼ ବଜେ ଗୀତ

କଳାଫିହ ! କାହିଁକ ଅଇଲୁ ରେ ଶ୍ରୀ ନୀଳ-କନ୍ଦର ଛାଡ଼ି
ଭାଇ ଭଗ୍ନୀ ସଙ୍ଗେ ଯେନ କରି ରଙ୍ଗେ
ରହିଛୁ ଗୁଣ୍ଡିଚା ବାଡ଼ି । ଘୋଷା ।
ହଜାରେ ସୁଆର ରାନ୍ଧ ପରଷିଲେ
ତେବେ ନ ପୂରଇ ପେଟ
ଏଠାରେ ସପୁରି ପଣସ କଦଳୀ
ଖା'ଇ ହୋଇଯିବୁ ମୋଟ ।୧।
ଅରଗଳ ଗଳ ଯିବାକୁ ତେଣିକ
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ
ଏବେ ନାନା ଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଡ଼ି ବାହି ।୨।
ଇନ୍ଦ୍ର ଚନ୍ଦ୍ର ଦେବ ବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢ଼ୁଥାନ୍ତି ବେଦ
ସେସୁଖ ନୋହିଲା ବୋଲି ଶୁଣୁଛୁ କି
ଡଗ ଝମାଳିଆ ପଦ ।୩।

ବଡ଼ ଦେଉଳରେ ବାଡ଼ ଧଣ୍ଡାମାଳ
ବଡ଼ ରଙ୍ଗ ଧଡ଼ି ପିନ୍ଧା
ଏବେ ଖାଇ ଭଗ୍ନୀ ତିନିଜଣ ଯାକ
ଖମ୍ବରେ ହୋଇଛ ବନ୍ଧା ।୪।
କର୍ପୂର ଚନ୍ଦନ ଚୂଆ ଚନ୍ଦୁସମ
ନ ରୁଚଲ ସେ ସୁବାସ
ଏବେ ଶ୍ରୀ ଅଙ୍ଗରେ ଆଙ୍ଗୁଳେ ବହଳେ
ଲଗିଛି ହଳଦ କସ ।୫।
ନାଡ଼ୀ ବଡ଼ ଟଜା ଖଣ୍ଡ ଝଇ ଖଜା
ଏ ଠୋଠେ ନୋହିଲ ମିଠା
ମାଉସୀ ଦୁଆରେ ରହି ଗୈବାଇଲ୍
ପାଉଁଶିଆ ପୋଡ଼ ପିଠା ।୬।
ଘର ଘରଣୀକ ନ ଦିନକୁ ପରା
କର ଆସିଥିଲୁ କଣ୍ଠ
ସେ କଥା ମାସୋର ମୂଲଉଛୁ ଗାଳ
ତୁ ବଡ଼ ବିଷମ ଖଣ୍ଡ ।୭।
ହେରାଦନ ପରା ରଥ ଭାଙ୍ଗି ଗଲେ
ଠାକୁରାଣୀ ହୋଇ କ୍ରୋଧ
ତେବେ ପୁଣି ତୋର ଚେତା ବହୁନାହିଁ
ଯାଉଛୁ ଗହମ ନଦ ।୮।
ଆନ ନାରୀ ପର ନୁହନ୍ତ କମଳା
ସେ ଯେ ନ ସହନ୍ତ ଠାହ
ଘଡ଼ିଏ ଉଚ୍ଛୁର ହେଲେ ଘଉଡ଼ିବେ
ଘରେ ପୂରାଇବେ ନାହିଁ ।୯।

ସେ ମାନ କହିବୁ ଗୋକୁଳ ନାରୀଙ୍କୁ
ଠାରିବୁ ନୟନ କୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜବଣେ ।୧୦।
ନିଶ୍ଚୟେ ତୋହର ମନେ ପଡ଼ିଗଲା
ବୃନ୍ଦାବନ ଗାଈ ରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଧେନୁ ଗୋପସଖା ।୧୧।
ଐଶ୍ୱର୍ଯ୍ୟ ସମ୍ପତ୍ତି ନୀଳାଦ୍ରିରେ ସ୍ଥିତି
ବ୍ରଜେ ଏକା ପ୍ରେମଭାବ
ଜଣାଗଲା ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମ ଭାବ ।୧୨।
ଜଣା ଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେକା ଲୋକ ଠେକ ଟିକିଏ ନ ରଖୁ
ଫନରେ ଦୟା ଶ୍ରୀବତ୍ସି ! ।୧୩।
ହରଙ୍କୁ ମୋହିନୀ ରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବତ୍ସ ହରଣେ
ସୁନାଶୀର ଗର୍ବ ଚୂନା କରିଦେଲୁ
ଗୋମତ ଗିରି ଧାରଣେ ।୧୪।
ଦନ୍ତ କ୍ଷତ ଚୂତ ଶବରଣୀ ଦେଲା
ଖାଇଲୁ ତାର ଅଇଁଠା
ଶୋଇଲା ଶେଜରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲା ପଦ ଗୋଇଠା ।୧୫।

ଭଲ ଭଲ ଲୋକେ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼
ଏବେ ନୀଚ ଲୋକେ ଦରଶନ କରି
ଯିବେକ ରଥ ଦଉଡ଼ ।୧୬।
ନୋ'ହିଲେ କାହିଁକି ଭକତ-ବତ୍ସଳ
ନାମ ଘେନନ୍ତି ବନ୍ଧୁ
ପତିତ ମାନଙ୍କୁ ଦରଶନ ଦେଇ
ଉଦ୍ଧରିଲୁ ଭବସିନ୍ଧୁ ।୧୭।
ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଳ ନାଗର ହରି !
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି ।୧୮
ବଡ଼ଲୋକ ପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକି ଘେନ ଦାଣ୍ଡେ ବୁଲିବାର
କାହା ଘରେ ଏହା ଅଛି ।୧୯।
ଗଉର ଚରଣ ବୋଲେ ପ୍ରଭୁ ପଣ
ଜଣାଗଲା ଏବେ ଆସ
ପତିତପାବନ ପତାକା ଉଡାଇ
ରତ୍ନ ସିଂହାସନେ ବସ ।୨୦।

———

[ବାଇଶି]

## ଗୁଣ୍ଡିଚା ମନ୍ଦିର ବିଜେ ଗୀତ

ନୀଳାଚଳ ପୁରୀ ତେଜି   କେଉଁ ଭାବ ମନେ ହେଜି
ଗୁଣ୍ଡିଚା ମନ୍ଦିରେ ଆଜି   ଅଛ ବିରାଜି ହେ ।୧।
ବଡ଼ଭାଇ ବଳରାମ   ଭଗିନୀ ସୁଭଦ୍ରା ନାମ
ସଙ୍ଗେ ଘେନି ସ୍ୱଧାମ   ଏଥେ ବିଶ୍ରାମ ହେ ।୨।
ସେବକ ଯଥାବିଧିରେ   ଚୂଳମାନ ଘେନି ଧୀରେ
ପାଡୁଛନ୍ତି ସନ୍ନିଧିରେ   କେଉଁ ସିଧିରେ ହେ ।୩।
ପୃଷ୍ଠଦେଶେ ସେନାପଟା   ପାଟ ସୂନେ ଭିଡ଼ା ଅଣ୍ଟା
ଝଲକ ଲାବଣ୍ୟ ଛଟା   ଶୋଭା ଚହଟା ହେ ।୪।
ଦଇତା ସେବକେ ନିଜେ   କରନ୍ତି ପହଣ୍ଡି ବିଜେ
ସେବାକୁ ନଇଲେ ଦ୍ୱିଜେ   ପାସୋରି ସେଜେ ହେ ।୫।
ଘଣ୍ଟ କାହାଳୀ କଂସାଳ   ମୃଦଙ୍ଗ କୁବୁଙ୍ଗା ଢାଲ
ବାଜଇ ଝାଞ୍ଜି ଝଞ୍ଜାଳ   ବାଦ୍ୟ ବିଶାଳ ହେ ।୬।
ଐଶ୍ୱର୍ଯ୍ୟ ସୁଖ ଆକର   ନୀଳାଦ୍ରି ଦ୍ୱାରକା ପୁର
କରାଇଲ ଅସୁନ୍ଦର   ଘନ ସୁନ୍ଦର ହେ ।୭।
ଶ୍ରୀ ବ୍ରଜ ଗୁଣ୍ଡିଚା ଘରେ   ବିଜେ ଗୋପାଳ ବେଶରେ
ଗୋପିକାଭାବାବେଶରେ   ମଜ୍ଜ ରସରେ ହେ ।୮।
ଏଥୁଁ ବାହୁଡ଼ୁଁ ମହିମା   କବାଟ କଳବେ ରମା
ଭକ୍ତଙ୍କ ବିଶେଷ କର୍ମ   ମାଗିବ କ୍ଷମା ହେ ।୯।
ସେ କ୍ଷୀରସିନ୍ଧୁ ଦୁହିତା   ହୋଇଛନ୍ତି ମାନବତୀ
ହେରା ପଞ୍ଚମୀର ରାତି   ଭାବ କଆଡ ହେ ।୧୦।

ଭୂମ୍ବର ଉପରେ ଖଗି ନନ୍ଦଘୋଷ ରଥ ଭଙ୍ଗି
ନାଏକା କାଟିକ ଫିଙ୍ଗି ଗଲେ ଶୋଭଙ୍ଗୀ ହେ ।୧୧।
ଦେବଦାସୀଙ୍କର ସାଥେ ସେ ହେରାଗୋହ୍ରାଣ୍ଡି ପଥେ
ବାହୁଡ଼ିଲେ ମନ ବ୍ୟସ୍ତେ କ ମନୋରଥେ ହେ ।୧୨।
ନବଦ୍ଦନ ଯାତ୍ରା ସାରି ଗଲେ ପୁଣି କମ୍ବୁଧାରୀ
ଦେବେ ଟି ମହତ ସାରି ସିନ୍ଧୁ କୁମାରୀ ହେ ।୧୩।
ମିଳନ୍ତେ ସିହଦୁଆରେ କାନ୍ଦବ କୁଆ ବୁଆରେ
ପାରିବ କ କଳିଆରେ ତେତ ହୁଆରେ ହେ ।୧୪।
ସେ ନୀଳାଦ୍ରି ସାମନ୍ତାଣୀ କହିବେ ନଷ୍ଟୁର ବାଣୀ
ସହିବ ଛଳ କାହାଣୀ ଲବଣ୍ୟଠାଣି ହେ ।୧୫।
ଠାକୁରାଣୀଙ୍କ ସ୍ୱେ ରୋଷ ଭଙ୍ଗାଇ ମାଗିବ ଦୋଷ
ତେବେ ସେ ହୋଇବେ ତୋଷ ଜଗନ୍ନିବାସ ହେ ।୧୬।
ଗଉର ଚରଣ ଭଣି ଦେବଙ୍କ ମଉଡ଼ମଣି !
କ ରଚନ ଦେଲେ ଗଣି ଗୋପ ରମଣୀ ହେ ।୧୭।

---

[ଭୈରବୀ]

## ବାହୁଡ଼ା ବେଜ ଗୀତ

ବଡ଼ ଠାକୁରଙ୍କ ସହୋଦର ହେ !
ମୋ ଜଣାଣେ ନୁହ କାଲ
ବଡ଼ଦାଣ୍ଡେ ବଡ଼ ଭୂଜକୁ ବିସ୍ତାରି
ବଡ଼ ଦେଉଳକୁ ଗ୍ଲଲ । ଘୋଷା ।
ବଡ଼ ପଣେ ବଡ଼ ଛଇକ ଦେଖାଅ
ପିନ୍ଧି ବଡ଼ ଧଣ୍ଡାମାଳ

ବଡ଼ରଜା କର ଯୋଡ଼ ଡାକୁଛନ୍ତି
ତାଙ୍କ ଗୁହାରି ନ ଟାଳ ।୧।
ବଡ଼ପଣ୍ଡା ବଡ଼ ସୁଆର ସେବକେ
କଲେଣି ବଡ଼ ପଖାଳ
ବଡ଼ ଠାକୁରାଣୀ ରୋଷ ହେବେ ବଡ଼
ଏ କଥା ମନରେ ଘାଲ ।୨।
ବଡ଼ ପାବଚ୍ଛୁଆ ବଡ଼ ଅଲସୁଆ
ପଣ ଗୁଡ଼ ତତକାଳ
ବଡ଼ ନୟନଙ୍କୁ କିବା ଅଗୋଚର
ବଡ ଦୁଖୀଙ୍କ ଜଞ୍ଜାଳ ।୩।
ବଡ଼ ସିଂହାର ବେଶକୁ ଦରଶନ
କରିବାକୁ ମୋ କଟାଳ
ବଡ଼ ଅରକ୍ଷିତ ଗଉର ଚରଣ
ଭଜେ ଶ୍ୟାମ କାମପାଳ ।୪।

---

[ଚଉଦ]

ଝୁଲଯାତ ଗୀତ

(ରାଗ ଚୋଡ଼ ଆଠତାଳୀ)

[ହାଣ୍ଡି ଝୁଲୁଛି ଗୋ ଦିଶୁଛି କେଡ଼େ ସୁନ୍ଦର-ବୃତ୍ତ]

ସରି ଯାଉଛି ଗୋ ସୁଖର ଝୁଲଣ ଯାତ
ଦେଖିଥାଅ ଥରେ ନୟନ ପଥରେ
ମୋପ୍ରାଣସହି ! ସଙ୍ଗାତ ! । ଘୋଷା।

ଶ୍ରୀଘନୁ ଦୁଲାଳୀ ଭୁଲେ ବନମାଳୀ
ଫୁଲ ଦୋଳିରେ ବଜେ ତ
ସଖୀଗଣ ମିଳି ଦେଇ ହୁଳହୁଳି
ଝୁଲନ୍ତି କ ରଙ୍ଗରେ ତ ।୧।
ମର୍ଦ୍ଦଳ ମଧୁର ବୀଣା ଏକତାର
ଶଙ୍ଖ ମହୁରୀ ବାଜେ ତ
ରବା ଭେଷ ତୂରୀ ବଜାୟୁ କାହାଳୀ
ମଧୁର-ସ୍ୱର ସହିତ ।୨।
ମୃଦଙ୍ଗ କଂସାଳ ଘଣ୍ଟା କରତାଳ
ସାରଙ୍ଗୀ ବାଜେ ତା ସାଥ
ନାଗର ଟିକର ଖଞ୍ଜଣୀ ଘୁମୁର
ବାଦ୍ୟ କେ କରିବ ଅନ୍ତ ।୩।
ଖଗ ଆଳାପିଣ କରୁଛନ୍ତି ଗାନ
ମାନସ କ୍ଲାନ୍ତ ସଙ୍ଗୀତ
ଦେବ ଦୁନ୍ଦୁଭିର ଭୁଲେ ଗୀତସ୍ୱର
ଶୁଭୁଅଛି ଅଲୌକିତ ।୪।
ଗଉର ଚରଣ ବୋଲେ ମୁଁ ଶରଣ-
ରକ୍ଷଣ କୃଷ୍ଣଙ୍କ ଭୃତ୍ୟ
ଦରଶନ କର ଯେ ଶୋଭା ମାଧୁରୀ
ଘୁମୁରେ କରିବ ନୃତ୍ୟ ।୫।

———

[ପଚିଶ]

## ଶ୍ରୀଗୌରଚନ୍ଦ୍ରିକା

ଜୟ ଜୟ ଚୈତନ୍ୟଚନ୍ଦ୍ର ଜୟ ନବଦ୍ୱୀପବାସୀ ।
ସୁନ୍ଦର ମୁଖ କୁନ୍ଦରଦନ ମନ୍ଦ ମଧୁର ହାସୀ ॥ ଘୋଷା ॥
ତ୍ରିଜଗନ୍ମୋହନ ମୁରତିସାର କଣ୍ଠେ ଲମ୍ବିତ ତୁଳସୀହାର
କୋଟି ମଦନ ଗର୍ବ ଖର୍ବ ସୁନ୍ଦର ରୂପ ରାଶି ।୧।
ପତିତ ରକ୍ଷଣେ ଊର୍ଦ୍ଧ୍ୱହସ୍ତ ଦେଖିଣ କପଟ ପଟଳ ଧ୍ୱସ୍ତ
ଦୁଷ୍ଟ ଦଳନେ ହୃଷ୍ଟ ବଦନ ମହିମା ପରକାଶି ।୨।
ଦାହ ପୁରଟ କାନ୍ତିକାନ୍ତ ଚମ୍ପକ ଦେଖି କରଇ ଭ୍ରାନ୍ତ
ଶ୍ରୀ କର୍ପୂର ଅଗର ଗନ୍ଧ-ଚନ୍ଦନେ ତନୁ ଭୂଷି ।୩।
ବରୁଣ କୁବେର ଇନ୍ଦ୍ର ଚନ୍ଦ୍ର ନାମ ଭଜନ କରନ୍ତି ସାନ୍ଦ୍ର
ଭୁବନମଙ୍ଗଳ ଯା ଶ୍ରୀଚରଣେ ପଦ୍ମାଳୟା ଦାସୀ ।୪।
ଶରୀର ତନୟ ନବକିଶୋର କଣ୍ଠ ଗଦଗଦ ପ୍ରେମେ ଘୋର
ବିମ୍ବାଧରେ ରାଧେ ରାଧେ ମଧୁର ବଚନ ଭାଷି ।୫।
ଗୌରଶ୍ରୀଚରଣ ଅରୁଣତେଜ ଶରଣ ଗଉରଚରଣ ଦ୍ୱିଜ
ଯାରେ ସେ ପଦ ଅଳ୍ପ ସଦୟ କଳିକଳ୍ମଷ ନାଶି ।୬।

———

[ଛବିଶ]

## ଶ୍ରୀଚୈତନ୍ୟଚନ୍ଦ୍ର ଭଜନ

ରେ ଚିତ୍ତ, ଚୈତନ୍ୟଚନ୍ଦ୍ର ଚରଣସରସିରୁହ ଧ୍ୟାନରେ ।
ଭେଜ ମନୁ ଆନ ଛାଡ଼ ପ୍ରୀତି କର ତୁ ନିତି ନାମ ଗାନରେ ॥
। ଘୋଷା ।

ଯାର ସୁମଧୁରଭାଷ କର୍ପୂର ହାସ ପୂରି ମୁଖେ ପ୍ରେମେ ଗରଗର ।
ଆଶ ଲଗାଅ ତୁ ପ୍ରାସ ଦୂର ହେବ ଦାସଭବେ ନିଦାନରେ ।୧।
ଚଣ୍ଡକରଜିତ କର୍ଣ୍ଣକୁଣ୍ଡଳ ପୂର୍ଣ୍ଣ ଶଶଧର ଶ୍ରୀମୁଖ ମଣ୍ଡଳ
ଦଣ୍ଡକମଣ୍ଡଳଧାରୀ କଟୀତଟେ କୌପୀନ ପରିଧାନ ରେ ।୨।
ଅମ୍ବୁଜାକୃତ ନେତ୍ର ଢଳ ଢଳ କମ୍ବୁଗ୍ରୀବ ସୁବିସ୍ତାର ବକ୍ଷସ୍ଥଳ
ଜମ୍ବୁନଦଜିତ କାନ୍ତି ତପୂର ଯାର ଜନ ପରିତ୍ରାଣ ରେ ।୩।
ଭାଷ ମୁଖେ ଗୌରାଙ୍ଗ ନାମକୁ ନାଶ ଅମଙ୍ଗଳ କପଟ କାମକୁ
ଦାସ ଗଉରର ଆଶ ଯେହ୍ନେ ପଦ ପଙ୍କଜ-ମଧୁପାନ ରେ ।୪।

———

[ସତେଇଶି]

## ଶ୍ରୀ ଗୌର ଭଜନ

ଯାଅ ନବଆବେଶକୁ ମାନସ ଗାଅ ଗଉର ଗୁଣ ରେ
ବାଅ ମୃଦଙ୍ଗ କରତାଳକୁ ତାଳେ ତାଳେ ଅନୁକ୍ଷଣରେ । ଘୋଷା ।
ପାଅ ବସି ସେ ଚରଣାମୃତକୁ ରଙ୍କ ପରି ପୁଣ ପୁଣରେ ।
ପାତଳେ ପଡ଼ି ଭକ୍ତିଭରେ ତୁ ଦଶନରେ ଧରି ତୃଣରେ ।୧।
ଖାଅ ସାଧୁଙ୍କ ଶେଷ ଉଚ୍ଛିଷ୍ଟ ତଳେ ନୋହି ଅବଗୁଣରେ ।
ଧ୍ୟାଅ ଶ୍ରୀ ବ୍ରଜଦମ୍ପତି ମିଳନମୂର୍ତ୍ତିଙ୍କୁ ମୁଖ୍ୟ ଠାଣରେ ।୨।
ଥାଅ ଜାହ୍ନବୀ ତୀରେ ବାସ କରି ନ ହୁଅ ଏଥି କୃପଣରେ ।
ନ୍ୟାୟରେ ଗୌର ଭକତଙ୍କ ଭୁଲେ ଗଣାହୁଅ ଏକ ଜଣରେ ।୩।
ତା ଅଭାବ ତ ନୋହିବ ତୋତେ ଦୟାଳୁ ସେ ସାଧୁଗଣରେ ।
ଧାଅଁ ଚଞ୍ଚଳେ ତହିଁ ଗୌର ବୋଲି ପରିହାସତୁ ନମଣରେ ।୪

———

[ଅଠେଇଶ]

## ଶ୍ରୀଗୌର ଭଜନ

ରେ ମୂଢ଼ମନ ! ଦୃଢ଼କର ଦେନ ଶ୍ରୀ ଗୌର ଭଜନ ॥ଘୋଷା॥
କଳିଯୁଗ ମତ୍ତ ମାତଙ୍ଗ ଦଳନ ପ୍ରମତ୍ତ କେଶରୀ ଶ୍ରୀ ଶଚୀନନ୍ଦନ
ଏମନ୍ତ ସୁନ୍ଦର କନକ ବରନ ପଦ ସଦା କର ଧ୍ୟାନ ।୧।
ନୟନ ଯୁଗଳ କର୍ଣ୍ଣ ଆୟତନ, ନବ ବିକଶିତ ଅରୁଣ-ନଳିନ
ଏମନ୍ତ ସୁନ୍ଦର ପଙ୍କଜ-ଲୋଚନ ପଦ ସଦା କର ଧ୍ୟାନ ।୨।
ଲକ୍ଷ୍ମୀ ବିଷ୍ଣୁ ପ୍ରିୟା ଜୀବନଈଶ୍ୱର କନ୍ଦର୍ପ ମୋହନ ମୂର୍ତ୍ତି ବିଶ୍ୱମ୍ଭର
ଏମନ୍ତ ସୁନ୍ଦର ନବ ନଟବର ପଦ ସଦା କର ଧ୍ୟାନ ।୩।
ଅପାର ମହିମା ଅନନ୍ତ ଗୁଣନିଧି କ୍ଷମା ନିଧାନ ଶ୍ରୀ କରୁଣାବାରିଧି
ଗୌର ଦ୍ୱିଜ ଗିର ଏମନ୍ତ ସୁନ୍ଦର ପଦ ସଦା କର ଧ୍ୟାନ ।୪।

———

[ଅଣତିରିଶ]

## ଗୌର ଦର୍ଶନ ଲାଳସା

(ସଙ୍ଗେ ବୃନ୍ଦାବନେ ଏ ପାପ ନୟନେ-ବୃତ୍ତ)

ସେ କି ନଦିଆପୁରେ ବିଷ୍ଣୁପ୍ରିୟା ପ୍ରାଣ ନାଥଙ୍କୁ ଦେଖିବ
ଶଚୀ ମାତାଙ୍କର ନୟନ ସଖାଳ ଗୋରାନାମ ହୃଦେ ଲେଖିବ। ପଦ।
ଶ୍ରୀବାସ ଅଙ୍ଗଣେ ଗୌରଭକ୍ତଗଣେ ସଙ୍କୀର୍ତ୍ତନାମୃତ ଚୂଷିବ
ସାଧୁଙ୍କର ପଦ-ଧୂଳିକି ସମ୍ପଦ କରି ସର୍ବାଙ୍ଗରେ ମାଖିବ ।୧।
ମୋର ମନ ଦୁଷ୍ଟ ସଭିଙ୍କ ଉଚ୍ଛିଷ୍ଟ ସାଦରେ ଭୁଞ୍ଜିଲେ ଭକ୍ଷିବ
ଗୌର ଛଡ଼ାଫୁଲ ତୁଳସୀ ଅମୂଲ୍ୟ ଚୂଳରେ ପୂରାଇ ରଖିବ ।୨।

ଅକଳନ ଭକ୍ତ ଗୋଷ୍ଠିରେ ପଶି ମୁଁ ସକଳ ତାପ ଉପେକ୍ଷିବ
ସିଦ୍ଧ ସାଧକଙ୍କ କଙ୍କର ଭାବରେ ସାଧନ ପ୍ରଣାଳୀ ଶିଖିବ ।୩।
ନୃତ୍ୟ ସଙ୍ଗୀତହିଁ ହେଉଥିବ ଯହିଁ ତହିଁ ମୋ ଲକ୍ଷ୍ୟକୁ ଯୋଖିବ
ମନ୍ଦଲ ମୃଦଙ୍ଗ ତାଳ ମାନ ରଙ୍ଗ ରସେ ତା ତା ଧେୟା ଭାଖିବ ।୪।
ଶ୍ରୀ ଗୌର ନନ୍ଦକ ପାଷଣ୍ଡି ତାର୍କିକ ଦୁର୍ଜନଙ୍କ ସଙ୍ଗ ତର୍କିବ
ମହା କାରୁଣିକ ପ୍ରେମ ସିନ୍ଧୁ ଭୁଲେକ ଉପମା ସ୍ଥିର ଲକ୍ଷିବ ।୫।
ହା ହା ପ୍ରାଣନାଥ ଗୌରାଙ୍ଗ ବୋଲି ମୁଁ ଗଡ଼ି କେଉଁଦନ ଶିଖିବ
ଗୌରଦ୍ୱିଜ ଭାଳ ଧରି ଜପାମାଳୀ ଶ୍ରୀଗୁରୁ ଅଙ୍କକୁ ଚାକିବ ।୬।

---

[ତିରଣ]

## ଶ୍ରୀ ହରିନାମ ମାଧୁରୀ ଭଜନ

[ପୀତପଟ କପଟ-ପ୍ରୀତି କରି ଶ୍ରୀମତୀଙ୍କ ସଡ଼ାଇଲ ହେ—ବୃତ୍ତେ]

ହରିନାମ କେଡ଼େ ସୁମଧୁର
ଯେ ବୁଝିଛି ସେହି ଜାଣେ ସିଆ ରେ ।
ଅଭକତ ଜନେ ଜାଣିବେ କି କାହୁଁ
ସୁରସିକ ବ୍ରଜ-ଭକ୍ତ ବିନା ରେ । ଘୋଷା ।
ସଦଗୁରୁ ଆଶ୍ରୟ ଯାର
ସେହି ଜାଣେ ସ୍ୱାଦୁ ଏହାର
ବଇଷ୍ଣବ ସେବା କରିଅଛି ଯେ ବା
ସେ ହୃଦେ ବହିଛି ପ୍ରେମମୀନା ରେ । ୧ ।
ଦ୍ୱିଜ କୁଳେ ଜନମ ଲଭି
ଥିଲେ ହେଲେ ତା ହୃଦ ପବି

ଶ୍ରୀରାଧା ଗୋବିନ୍ଦ ଯୁଗଳ ପଦାବ୍ଜ
ମଧୁକୁ ଯତ୍ନ ନ କଲି ଘେନା ରେ । ୨ ।
ଯେ ମଜ୍ଜିଛି ବିଷୟ ରସେ
ଦମ୍ଭ ଅହଂକାରେ ସରସେ
ସେ ମୂଢ଼ ବର୍ବର କପଟ ବୁଦ୍ଧିକ
ସାଧୁଜନଙ୍କର ଯେ ଅଚିହ୍ନା ରେ । ୩ ।
ମହାଭାବ ସ୍ୱରୂପା ଧନୀ
କୃପା ହେଲେ କି ଅଛି ହାନି
କହଇ ଗଉର- ଚରଣ ଅଜ୍ଞାନୀ
ଭକ୍ତି ନାହିଁ ମୋର ଏକ ଚିନା ରେ । ୪ ।

---

[ଏକତିରିଶ]

## ଶ୍ରୀ ହରିନାମାମୃତ ଭଜନ

( ରାଗ ମଙ୍ଗଳ ଗୁର୍ଜ୍ଜରୀ—ଢାଳ ପହପଞ୍ଚ )

ସୁମଧୁର ହରିନାମେ ମଜ୍ଜ ଆରେ ମନ
କାହିଁପାଇଁ ଏଣେ ତେଣେ ଧାଇଁ ହେଉ ଛନ୍ନ । ଘୋଷା ।
ଅନ୍ୟ ଚିନ୍ତା ବୃଥା କଥା ଗୁଢ଼ ରେ ବହନ
ଶ୍ରୀ ନାମେ ତୋ ଅନୁରାଗ ବଢ଼ାଅ ଯତନ । ୧ ।
ନାମେ ଗତି ନାମେ ମୁକ୍ତି ନାମେ ଶାନ୍ତି ଜାଣ
ନାମେ ପରମ ଆନନ୍ଦେ ଉଲସିଅ ପ୍ରାଣ । ୨ ।
ନିରବଧି କର ବିନା ନାମ ରସ ପାନ
ଚିର ଆଶାକୁ ମେଣ୍ଟାଅ କରି ନାମ ଧ୍ୟାନ । ୩ ।

ଦେଖ ନିଜ ହୃଦପୁରେ ନିତ୍ୟ ବୃନ୍ଦାବନ
ଉଚ୍ଛୁଳିବ ପ୍ରେମ ସିନ୍ଧୁ ଲଭି ଦିବ୍ୟ ଜ୍ଞାନ ।୪।
ସର୍ବତୀର୍ଥ ସର୍ବଧାମ ଶ୍ରୀକୃଷ୍ଣଚରଣ
ସେହି ପଦ ଏକା ସ୍ୱର୍ଗ ବୈକୁଣ୍ଠ ଭୁବନ ।୫।
ସର୍ବଧର୍ମ ଯାଗଯଜ୍ଞ ତପ ବ୍ରତ ମାନ
ହରିପଦ ସ୍ମରଣରେ ପାଇବୁ ନିଦାନ ।୬।
ସାଧୁ ଭକ୍ତଙ୍କର ଯେହୁ ନିତ୍ୟ ନିକେତନ
ସେହି ଶାନ୍ତିମୟଧାମେ କର ଅବସ୍ଥାନ ।୭।
ଗୌର ଦ୍ୱିଜ ବୋଲେ ଜାଣି ନ ହୁଅ ଅଜାଣ
ଭଜ ହରି ପାଦପଦ୍ମ ଉଲସାଇ ପ୍ରାଣ ।୮।



[ବତିଶ]

## ଶ୍ରୀ ଶ୍ୟାମ ନାମ ଭଜନ

ଭଜ ରେ ମନ! ଶ୍ୟାମ ସୁନ୍ଦର
ନାମକୁ ଅନୁବରତରେ ।
ପାମର ମନ କାମ ବରଜ
ଧାମ ବରଜପୁର ତ ରେ ॥ ଘୋଷା ॥
ହାସ ଭାଷ ଗୃଷ ବାସ—
ଆଶରୁ ତୁ ନିବରତ ରେ
ଦାଶରଥିର ଦାସ ହୋଇ
ଉଦାସରେ ଦିନ ହର ତ ରେ ।୧।
ଆନ ରସରେ କାନ ନ କର
ମାନ ମୋହର ଗିର ତ ରେ

କାଳ ହୋଇ ତୁ ଜାଲେ ନ ପଡ଼
ଗୋକୁଳ ବ୍ରଜକୁ ଚରତରେ । ୨ ।
ଜାୟା ସୁରତ ମାୟାରେ ପଡ଼ି
ବାୟା ହୋଇ ନ ମର ତ ରେ ।
ଗୁପ୍ତା ରମଣତନୟା ଜଳରେ
କାୟା ଧଉତ କର ତ ରେ । ୩ ।
କୁଣ୍ଡ ସଲିଳେ ମୁଣ୍ଡ କ୍ଷାଳି
ତୁଣ୍ଡରେ ନେଇ ଭର ତ ରେ
ଦଣ୍ଡଧର ଉଦ୍ଦଣ୍ଡ ଦଣ୍ଡ
ଦଣ୍ଡକେ ତୁ ହର ତ ରେ । ୪ ।
ଦ୍ଵିଜ ଗଉର ଚରଣ ଶରଣ
ଅରୁଣ ଚରଣେ ନରତ ରେ
ଛେଦବେ ଏ ଭବଭୟକୁ
ଅଭୟ କିଶୋର କରୁଣାକରତରେ । ୫ ।

---

[ତେତିଶ]

## ଶ୍ରୀ ହରିନାମ ଭଜନ

ହରଷେ ହରିନାମକୁ ମନ ! ନରତେ ବସି ଗା ରେ ।
ଗୋବନ୍ଦ ଗୋପିନାଥ ମଦନମୋହନ ପଦ ଧ୍ୟା ରେ । ଘୋଷା
କଳିତ ନୂହଇ ଲଳିତାଙ୍ଗୁଳି ଚଳିତ ବଂଶୀ ଦ୍ଵାରେ ।
ଝଳିତ ବଦନ ଖଳିତ ହାସ ଗଳିତ ପୀୟୂଷ ଧାରେ ।୧।
ପୁଞ୍ଜି ପୁଞ୍ଜି ରୁଞ୍ଜି ଗୁଞ୍ଜି ଖଞ୍ଜିତ ଅଳକା ରେ ।
ଷଟ୍‌ପଦକୁଳ ବେଷ୍ଟିତ ଚୂଳ ସୁମନସ-କଳିକା ରେ ।୨।

ବାଙ୍କ ମୋହନ ବଂଶୀ ଝାଙ୍କ କରେ କୁଳବନଦ୍ୱାରେ ।
କାମ ମୋହନ ଭଙ୍ଗୀ ରଙ୍ଗୀ ସଙ୍ଗୀ ସୁବଳ ଯା ତେ ର ।୩।
ଚନ୍ଦନ ଘନସାର ଆଉ ଚନ୍ଦ୍ରାମୃତ ଧାରେ ।
ଶ୍ୟାମ ଶୀତଳ ହୋଇ ପାଡଳ ଯିବେ ଯା ଭଳପା ରେ ।୪।
ଦ୍ୱିଜ ଗଉର ଘବନ ନଜ ସେବନ ଅନୁସାରେ ।
ଯତ୍ନେ ଯୁଗଳ ନାମ ରତନ କଣ୍ଠ ଭୂଷଣ ହାରେ ।୫।

———

[ଚଉତରଣ]

## ଶ୍ରୀ ନାମାବଳୀ ଭଜନ

ଶ୍ରୀ ନୃସିଂହ ଲକ୍ଷ୍ମୀନାଥ ନାରାୟଣ ଦେବ ।
ନିରନ୍ତର ନଶିବାସର ଚିନ୍ତରେ ମନ ଏବ । ଘୋଷା ।
ମାଧବ ମଧୁସୂଦନ ହରି ଜଗନ୍ନାଥ ସ୍ୱାମୀ ।
ନିରଞ୍ଜନ ନଙ୍କଳଙ୍କ ଅନନ୍ତ ଅନ୍ତର୍ଯାମୀ । ୧ ।
ଶ୍ରୀକର ଶ୍ରୀସତ୍ୟବାଦୀ ଶ୍ରୀନିବାସ ଶ୍ୟାମ ।
ଶ୍ରୀଧର ଶ୍ରୀପୁରୁଷୋତ୍ତମ ରାଘବ ଅଭିରାମ । ୨ ।
ପରମ ବ୍ରହ୍ମ ପୁରୁଷଶ୍ରେଷ୍ଠ ଭକ୍ତଜନଙ୍କ ବନ୍ଧୁ ।
ଭୁବନେଶ୍ୱର ଭୟଭଞ୍ଜନ ନୀଳଶୈଳଇନ୍ଦୁ । ୩ ।
କୌଶପକୁଳଗର୍ବଖର୍ବକାରୀ ସୁଜନରକ୍ଷ ।
ହେ ମୁକୁନ୍ଦ ଦାମୋଦର ସବ୍ୟସାଚୀପକ୍ଷ । ୪ ।
ମତ୍ସ୍ୟ କଚ୍ଛ ଶ୍ରୀ ବରାହ ନୃସିଂହଅବତାର ।
ବାମନ ଶ୍ରୀ ପରଶୁରାମ କ୍ଷତ୍ରିୟ କୁଳସାର । ୫ ।
ତପନ-ବଂଶମଣ୍ଡନ ଶ୍ରୀରାମଚନ୍ଦ୍ର ସ୍ୱାମୀ ।
ଜନକ ସତ୍ୟ ପ୍ରତିପାଳନ ହେତୁ କାନନଗାମୀ ।୬।

ସପ୍ତ ଉରଗ ମସ୍ତକ ପର ହଳ ମୂଷଳଧାରୀ ।
ସଂକର୍ଷଣ ଅବତାରକ ପ୍ରଳମ୍ବାନ୍ତକାରୀ ।୭।
ବୌଦ୍ଧ କଲ୍କି ଅନନ୍ତ ଅବତାର ସୃଷ୍ଟି ହେତୁ ।
ଧର୍ମ କର୍ମ ସଂସ୍ଥାପନ ଧରଣୀ ଧର୍ମ ସେତୁ ।୮।
ହେ ଗୋବିନ୍ଦ ଆନନ୍ଦକନ୍ଦ ଅଭୟ ପାଦପଦ୍ମ ।
ହେ ଅଚ୍ୟୁତ ଆର୍ତ୍ତତ୍ରାଣ ସର୍ବବିନୋଦସଦ୍ମ ।୯।
ହେ ନବୀନ ଜଳଦ କାନ୍ତି ହେ ବ୍ରଜେନ୍ଦ୍ର ନନ୍ଦନ ।
ହେ ନଟବରମଦନମୂର୍ତ୍ତି ଗୋପିକାହୃଦ ଚନ୍ଦନ ।୧୦।
ହେ ମୋହନ ନବକିଶୋର ଶ୍ରୀବ୍ରଜପୁର ମଣ୍ଡନ ।
ହେ ଗୋକୁଳପଶୁପାଳକ ଦୁଷ୍ଟ ଦୈତ୍ୟ ଖଣ୍ଡନ ।୧୧।
ହେ କଦମ୍ବତଳଲମ୍ପଟ ଯୁଗ୍ମାର୍ଜୁନଭଞ୍ଜନ ।
ହେ ରସିକ ରାସେଶ୍ୱର କାଳୀଗର୍ବଗଞ୍ଜନ ।୧୨।
ହେ ବୃଷାସୁରଦର୍ପଦଳନ ଗୋବର୍ଦ୍ଧନ ଧାରଣ ।
ହେ ଦାବାଗ୍ନି ଭକ୍ଷକାରୀ ଗୋଗୋପାଳତାରଣ ॥
ହେ କାମିନୀ ନେତ୍ରାଞ୍ଜନ ନାଟ୍ୟ ନୃତନଭଙ୍ଗିଯୁ ।
କାମମୋହନ ଶ୍ୟାମସୁନ୍ଦର ଦାମସୁବଳସଙ୍ଗିଯୁ ॥
ଦ୍ୱିଜ ଗଉର ଚରଣ ଯାଚେ ହେ କିଶୋରୀ ବଲ୍ଲଭ ।
ମଦ୍ ବାଞ୍ଛିତ ବୃନ୍ଦାବନ ଭକ୍ତସଙ୍ଗ ସୁଲଭ ।୧୪।

———

[ପଞ୍ଚତ୍ରିଂଶ]

## ଶ୍ରୀ ହରିନାମ ମହିମା ଭଜନ

(ରାଗ—ଶଙ୍କରାଭରଣ ତାଳ ଆଠତାଳୀ)

[ଭଜ ରାଧେକୃଷ୍ଣ ବୋଲି—ବୃତ୍ତେ]

ମନ ଭଜ ନିଷ୍ଠାକରି ।
ହରେକୃଷ୍ଣ ମହାମନ୍ତ୍ର ତୋ ଅନ୍ତିମ ଶିରୀ । ଘୋଷା ।

ଏ କଳିଯୁଗେ ଶ୍ରୀହରି ନାମ ରୂପେ ଜାତ
ନାମ ବଳେ ଉଦ୍ଧାରନ୍ତି ସକଳ ଜଗତ । ୧ ।
ନାମାଭାସ ମାତ୍ରେ ହୁଏ ସର୍ବ ପାପକ୍ଷୟ
ସର୍ବମନ୍ତ୍ର ସାର ନାମ ଅକ୍ଷୟ ଅବ୍ୟୟ । ୨ ।
ଅଚିନ୍ତ୍ୟ ଅଦ୍ଭୁତ ନାମ ତତ୍ତ୍ୱ ବ୍ୟବହାର
ନାମରତ୍ନମାଳାଗୋଟି କରି ହୃଦେ ହାର ।୩।
ଏ ମହିମା ନ ଜାଣନ୍ତି ତାର୍କିକ ଗୁଆଁର
ପଡ଼ନ୍ତି ସେ କୁମ୍ଭୀପାକେ ନ ପାଇ ନିସ୍ତାର ।୪।
ଗୌର ଦ୍ୱିଜ ବୋଲେ ଧନ୍ୟ ଗୌର ଅବତାର
ସଂକୀର୍ତ୍ତନ ଛଳେ ନାମ କଲେ ଯେ ପ୍ରଚାର ।୫।

———

[ଛତିଶ]

## ଶ୍ରୀ ହରିନାମ କୀର୍ତ୍ତନ ଭଜନ

କର ମନ ହରିନାମ କୀର୍ତ୍ତନ କହୁଛି ମୁଁ ତୋତେ ବାରମ୍ବାର । ଘୋଷା ।
କଳିତ ଲଳିତ ମଧୁର ବେଶ ଖଳିତ ଲଳିତ ଚନ୍ଦ୍ରହାସ
ଚଳିତ ଚରଣ କମଳ ଯୁଗଳୁଁ ମଧୁ ମକରନ୍ଦ ଧାର ଧାର ।୧।

ଯେଉଁ ସୁଚରିତ୍ରରେ କହୁଛି ସାର ନବଘନ ତନୁ ନବ କିଶୋର
ଚେତ ଭଜ ମନ ! ଅଳସ ନକର ହରି ଚରିତର ସାର ସାର । ୨ ।
ଛୁଟିବ ଅଳପକେ ଏ ମୋହ ପାଶ ଜଗବନ୍ଧୁ ନାମ ଯତନେ ଘୋଷ
ଝଗଡ଼ ମରନା କୃଷ୍ଣନାମ ବିନା ଗତି କେ ବା ଏହି ଆର ଆର ।୩।
ନିଶ ଦିବସରେ କର ତୁ ଧ୍ୟାନ ଟିକାଏ ମନରେ ନ ଧର ଆନ
ଠାକୁର ଚରଣେ ଆଶ୍ରେ କରିଥିଲେ ଛୁଟିବ ଦୁର୍ଗତି ଘୋର ଘୋର ।୪।
ଡେରିଥା ଶ୍ରବଣେ ନାମକୁ ତାର ଢାଳେ କି ବିପତ୍ତି ରହିବ ଆର
ଆନନ୍ଦ ନାମ କନ୍ଦରୁ ମଧୁର ପୀୟୂଷକୁ ବୋଲେ ସ୍ଥିର ସ୍ଥିର ।୫।
ତୁଣ୍ଡରେ ଶ୍ରୀକୃଷ୍ଣ ନାମକୁ ଗାଇ ଥାନକରି ବ୍ରଜ ମଣ୍ଡଳେ ଯାଇ
ଦିବ୍ୟ ଦେହ ଧରି ବାରିବନେ ହେରି ସେବନ ହେବ ସାରସାର ॥
ଧୀର କର ତୋର ଧୈର୍ଯ୍ୟବୁଦ୍ଧି ନନ୍ଦସୁତ ପଦ କର ତୁ ସିଦ୍ଧି
ପତିତମାନଙ୍କ ପାବନ ନିମନ୍ତେ ନାମ ମୁକତି ବଜାର ଯାର ।୭।
ଫେରି ବ୍ରଜପୁରେ ଯୋଷ ତୁ ପେଟ ବୈଷ୍ଣବ ଚରଣ ଯୁଗଳେ ଲୋଟ
ଭ୍ରାନ୍ତିଯିବ ତୁଟି ସେ କୁଟୀକଗଳେ ନାହିଁ ସେ ସ୍ଥଳେ ବିକାର କାର ॥
ମନ ଦୃଢ଼ କରି ଲଗାଅ ଲକ୍ଷ୍ୟେ ଜମୁତ ବରନ ମୋହନ ବକ୍ଷ୍ୟେ
ଶ୍ରୀରାସବିହାରୀ କଳବେଣୁଧାରୀ ବୈଜୟନ୍ତୀ ହାର ଯାହାର ହାର ॥
ଲାବଣ୍ୟ ମୁରତି ନନ୍ଦନନ୍ଦନ ବୃଷଭାନୁସୁତା ହୃଦ ଚନ୍ଦନ
ସଂସାର ତାରଣେ ଦୁଷ୍ଟ ନିବାରଣେ ବହୁବିଧ ଅବତାର ତା'ର ॥
ଶାସ୍ତ୍ରରେ ଘୋଷିଛି ସକଳ ଲୋକ ଶାନ୍ତ ହେବା ପାଇଁ ଅଛି ପ୍ରୟୋଗ
ହରି ଚରିତ ପୀୟୂଷକୁ ପିଅ ତ ଏହି ଉପଚାର ସାର ସାର ॥
ଷୁଦ୍ରମତି ଦ୍ୱିଜ ଗଉର ଋଷି ଷିତିଚନ୍ଦ୍ରା ସୁତ ହୁଅ ଉଦାସୀ
କ୍ଷମା କୃପାନିଧି ନାମ ଆଶ୍ରେ କଲେ ହେବୁ ଭବ ଅକୂପାର ପାର ॥

———

[ସଇଁତରଣ]

## ଶ୍ରୀବ୍ରଜଯୁବରାଜ ଭଜନ

ଧୀର ସମୀର ବହାରୀ ନାମ ନିରନ୍ତର ରଟୁଥା ।
ରଜନୀ ଦିନ ଭଜନେ ମନ ମାୟାରୁ ହଟୁଥା ॥ ଘୋଷା ।
ବ୍ରଜ ଯୁବରାଜ, ନନ୍ଦତନୟ ଲୀଳାରସ ଆଦି ସୁଗୁଣଚୟ ।
ସଞ୍ଜ ସକାଳରେ ବସି ନିଷ୍ଠଳରେ ଜଞ୍ଜାଳ କାଟୁଥା ।୧।
ରସନା ପାମର ବିଷୟା ରସେ ନାମାମୃତ ପିଅ ରସନା ତୋଷେ ।
ବାସନା ମଜ୍ଜନେ ଦଣ୍ଡେ କ ନିମିଷେ ନଠାଇ ରହିଥା ।୨।
କୃଷ୍ଣ କୃଷ୍ଣ ବୋଲି ଆନନ୍ଦ ଭୋଳେ ଗଡ଼ାଗଡ଼ି ଦିଅ କୃଷ୍ଣର ଆଗେ
ମଞ୍ଜନା ପ୍ରମଦା ସୁତବିତ୍ତ ଗୃହେ ତହିଁରୁ ଫିଟିଥା ।୩।
ଜୀବନ ଯୌବନ ନୁହଇ ଚିର ଗୁରୁ କୃଷ୍ଣ ପାଦେ ଲଗାଇ ଶିର
ଶ୍ରୀବନ ଦ୍ୱାଦଶ ପରିକ୍ରମା କରି ସାଧୁଙ୍କୁ ଖଟିଥା ।୪।
ସମୟ ତୋ ଯାଉ କୃଷ୍ଣ କଥାରେ ଏ ଭବୁଁ କୃତାର୍ଥ ହେବୁ ଯଥାରେ
ବୃଥାରେ ପାପ ନ ମୁଣ୍ଡା ଭୁ ମଥାରେ ସୁଚିତ୍ତେ ବାଣ୍ଟୁଥା ।୫।
କହଇ ଗଉରଚରଣ ଦ୍ୱିଜ ଷଡ଼ାକ୍ଷରମନ୍ତ୍ର ଯେ ମୂଳବୀଜ
କରି ଜପ ଧ୍ୟାନ ଲଭି ଦିବ୍ୟଜ୍ଞାନ ତନୁକୁ ମାଠୁଥା ।୬।

———

[ଅଠତରଣ]

## ଶ୍ରୀବ୍ରଜରାଜ ତନୟ ଭଜନ

ଜେ ଜେ ବ୍ରଜରାଜତନୟ କୁଞ୍ଜବିନୋଦକାରୀ ।
ଜେ ନବଘନ କାନ୍ତିସୁନ୍ଦର ମୋହନ ମୁରଲୀଧାରୀ । ଘୋଷା ।

ନୀଲକଣ୍ଠ ଚନ୍ଦ୍ରଚୂଲ ଗୁଞ୍ଜ ରୁଞ୍ଜ ଅତି ଶୋହେ
ଗଣ୍ଡମଣ୍ଡଳେ ମକର କୁଣ୍ଡଳ ଜଗଜ୍ଜନ ମନ ମୋହେ ।୧।
ଭାଲପଟେ ବିରଚିତ ମୃଗମଦ କସ୍ତୁରୀ ଦେଇ
କୁସାରଧନୁନିନ୍ଦିତ ଭୂରୁ ଶ୍ୱେତପଦ୍ମନେତ୍ର ।୨।
ବିମ୍ବାଧରେ ସ୍ଫୁରିତ ହାସମୋହିତ ଭୁବନ ସବ
ବଦନଦୀପ୍ତି ଖର୍ବ କରଇ ପର୍ବଶଶୀର ଗର୍ବ ।୩।
ସାରରତନ ହାର ପଦକ କଣ୍ଠଭୂଷଣ ମୋତି
ପୀତବସନ ଜିତବିଦ୍ୟୁତ ଝଲ ଝଲକ ଜ୍ୟୋତି ।୪।
କଙ୍କଣ ମଣିମଣ୍ଡିତକର କିଙ୍କିଣୀ କଟି ମାଝେ
ଝୁଂ ଝୁଂ କୃତ ନୂପୁର ନାଦ ପାଦ ଯୁଗଳେ ସାଜେ ।୫।
ମୋହିତ ବ୍ରଜମଣ୍ଡଳ ମହୀ ମଦନମୋହନଭଙ୍ଗୀ
ଦାମ ସୁବଳ ମଧୁମଙ୍ଗଳ ସ୍ତୋକକୃଷ୍ଣ ସଙ୍ଗୀ ।୬।
ଚତୁରାନନ ପଞ୍ଚାନନ ସହସ୍ରାନନ ଆର
ଅଶେଷ ଗୁଣ ଗଣାର୍ଣ୍ଣବ ବର୍ଣ୍ଣିତେ ନୋହେ ଯାର ।୭।
ପତିତ ଜନ ପାବନ ଦୀନବନ୍ଧୁ ନାମ ଯେଣୁ
ପାମର ଦ୍ୱିଜ ଗୌରଚରଣ ଆଶ୍ରୟ କରେ ତେଣୁ ।୮।

---

[ଅଣରୃଳଣ]

## ଶ୍ରୀବ୍ରଜରାଜନନ୍ଦନ ଭଜନ

ପାହି ଶ୍ରୀ ବ୍ରଜରାଜ ନନ୍ଦନ ପାହି ନିଖିଳ ବନ୍ଦନ ।
ପାହି ଗୋକୁଳପୂର୍ଣ୍ଣଶଶଧର
ଗୋପୀହୃଦ ତଟଚନ୍ଦନ । ଘୋଷା ।

ଶିଖିଚନ୍ଦ୍ରକଚୂଳ ମୂଳକୁ ବକୁଳ ମାଳତୀ ଭୂଷଣ
ରଙ୍ଗି ମାଧୁରଭଙ୍ଗୀ ଦେଖି ମୃଦୁଅଙ୍ଗୀ ମନ ତୋଷଣ ।୧।
ନବଜଳଧର କାନ୍ତ ସୁନ୍ଦର ପୀତପଟ କଟୀ ଶୋଭନ
ସାର ଶ୍ରୀଅଙ୍ଗରେ ଯାର ବୈଜୟନ୍ତୀ ହାର ସୁନ୍ଦର ଲମ୍ବନ ।୨।
କାଳୀ ଅହିବର ଗର୍ବ ଗଞ୍ଜନ ଯାମଳାର୍ଜ୍ଜୁନ ଭଞ୍ଜନ
ବଂଶୀ ବାଦକ ମଦନ ମାଦକ ସର୍ବଜନ ମନରଞ୍ଜନ ।୩।
ଦୁଷ୍ଟ କୌଣପ ନାଶି ହୃଷ୍ଟରେ ଗୋ ପରିଷ୍ଟ ବିଖଣ୍ଡନ
ଉନବିଂଶତି ଚିହ୍ନରେ ବ୍ରଜଧରଣୀ ମସ୍ତକ ମଣ୍ଡନ ।୪।
ଗୋପୀଜନମନ ପୂର୍ଣ୍ଣ କଳ୍ପନ ପ୍ରେମ ଭକ୍ତି ସୁସଞ୍ଚନ
ମାତି ମହେଶଅଗତି ରସରେ ସେ ଗତି ରାସରେ ବଞ୍ଚନ ।୫।
ଦାସ ଗଉରର ଆଶ ସ୍ନେହ କର ବିଷୟ ପାଶ ବିମୋଚନ
ଘନବାନ୍ଧବ ଗୋପିକାଧବ କାହ୍ନ ପଙ୍କଜଲୋଚନ ।୬।

———

[ଝୁଲଣ]

## ଶ୍ରୀ ଶ୍ରୀମତୀ ପତି ଭଜନ

ଭଜ ରେ ମନ ଶ୍ରୀମତୀପତି ପାଦପଙ୍କଜ ଧାମରେ ।
କୁନ୍ଦନ ନନ୍ଦନ ପ୍ରତିମା ସ୍ୱଚ୍ଛ ନବୀନଜଳଦ ଶ୍ୟାମରେ ।।ଘୋଷା।।
ତୁଳସୀ ବୃନ୍ଦ ବିଷୟ ବ୍ୟାଳ ଜାଳ ନାଶନେ ଉପାୟ ଭଲ
ମାଳ ତୁଳସୀ ଧରିଣ ଜପ ତୁ ବାଳମୁକୁନ୍ଦ ନାମରେ ।୧।
ଶ୍ୟାମଳବଦନ ରୁଚିର ଗାତ୍ର ଅମଳ କମଳ ବିକଚନେତ୍ର ।
ଧ୍ୟାନେ ଦେଖି ତୁ ଜ୍ଞାନ ନୟନେ ପୂର୍ଣ୍ଣ ହୋଇବ କାମ ରେ ।୨।

ନନ୍ଦରସୁତ ମନ୍ଦରଧର ଵୃନ୍ଦରଦନ ସୁନ୍ଦରବର
ରାମ ଅନୁଜ ନାମକୁ ଧରି ଛେଦ ଏ ଭବଦାମରେ ।୩।
ଦ୍ଵିଜ ଗଉର ଚରଣ ଭଷି ଭବଭବାର୍ଣ୍ଣବେ ନ ଯାଅ ଭାସି
ଦିବା ବିଭାବରୀ ଭାବ ତୁ ଭାବ-ବିନୋଦିଆ ଘନଶ୍ୟାମରେ ।୪।

———

[ଏକତାଳୀ]

## ନାମକୀର୍ତ୍ତନ ଭଜନ

ଚିନ୍ତରେ ମନ ! ରଜନୀ ଦିନ
ରାଧେକୃଷ୍ଣ ପଦ ବାରମ୍ବାର ।
ହେବ ଭଲକରି ବୋଲ ହରି ହରି
ଏହି ଏକା ଏ ସଂସାର ସାର । ଘୋଷା ।
ନେତ୍ରୁ ଅବା କସ ଏ ବିଷୟା ବିଷ
ଘାରି କରେ ତାତେ ସୁରଖାର ।
ହରିନାମେ ଗର୍ବ ଅବିଦ୍ୟାକୁ ବର୍ଜ
ହେବୁ ଭବ-ଅକୂପାର ପାର ।୧।
ପୁତ୍ର ଦାରାଧନ ସ୍ଵପନ ସମାନ
କେହି ନୁହେଁଟି ପ୍ରକାର କାର ।
ଏ ଜଞ୍ଜାଳେ ପଡ଼ି ଯାଅନା ତୁ ସଢ଼ି
ବୃଥା ପ୍ରେମଅଶ୍ରୁ ଧାରଧାର ।୨।
କାମ କ୍ରୋଧ ଲୋଭ ମାତ୍ସର୍ଯ୍ୟ ଆରମ୍ଭ
ତଡ଼ି ଏ ଶତ୍ରୁଙ୍କୁ ମାର ମାର ।
ମିଛ ବର୍ଣ୍ଣିଜକୁ ସତପ୍ରାପ୍ତି ମଣୁ
ଛି ଛିରେ ତାକୁ ନ ଗାର ଗାର ।୩।

ଅମୃତ ବୋଲି ତୁ ଯାହାକୁ ଭାବୁଛୁ
ସେହିଟି କପଟ ଖାର କ୍ଷାର ।
ଗୌରହରି କହି ସନ୍ଥସଙ୍ଗେ ରହି
ଗୁରୁ ବଚନକୁ ଆର ଆର ।୪।

———

[ବସନ୍ତ]

ଶ୍ରୀ ହରିଗୁଣ ଭଜନ

( ରାଗ ଶଙ୍କରାଭରଣ ତାଳ ଆଠତାଳୀ )

ମନ ! ମୋ ବଚନ ମାନ
ସବୁ ପରିହରି ହରିଗୁଣ କର ଗାନ । ଘୋଷା ।
ଧନ ପୁତ୍ର ପରିବାର ଅଛନ୍ତି ତୋ ଯେତେ ।
ମଲାବେଳେ ଜଣେ କେହି ନ ଯିବେ ସଙ୍ଗତେ ।୧।
ଆତ୍ମୀୟ ସ୍ୱଜନେ ଆସି ଉଚ୍ଚେ ଡକା ଛାଡ଼ି ।
କାନ୍ଦି କାନ୍ଦି ବାନ୍ଧିଦେବେ ଛିଣ୍ଡାକନ୍ଥା ପାଡ଼ି ।୨।
କେ ଡରେ ନ ଯିବେ ପାଶେ ରହିବେ ଅଲଗା ।
ମଡ଼ାଛୁଆଁ ହୋଇ କେହି ହଜାଳିବେ ଲୁଗା ।୩।
ଥୋକେ ଲୋକେ ନ ଛୁଇଁବେ ମୁର୍ଦ୍ଦାରଟା ବୋଲି ।
କୋକେଇରେ ଲଦିନେବେ ଶୁଣାନେ ଦୋହଲି ।୪।
ଜାଣି ନପାରୁ ଅଲକ୍ଷି ଅନାଡ଼ି ଥୋବର ।
ସିଞ୍ଚିବେ ତୋପରେ ପାଣି ଗୋଳାଇ ଗୋବର ।

ପୋଡ଼ିବେ ପୋଡିବେ ଅବା ଫିଙ୍ଗି ଦେବେ ନେଇ
ସକଳେ କହୁଛି ଦୟା ନ ବହିବେ କେହି ।୭।
ଗୌରଚନ୍ଦ୍ର କହେ ଆରେ ମୂଢ଼ ଦୁରାତ୍ମର ।
ସତ କି ମିଛ ଏକଥା ସାଧୁଙ୍କୁ ପଚାର ।୮।

———

[ଚେଉ୍ୱାଳିଣ]

ଶ୍ରୀହରି ଭଜନ

(ରାଗ ପୁରବୀ ତାଳ ଝଲ)

ମୂଢ଼ମନ ! ହରି ଭଜୁଥା ।
ଦୁର୍ଲ୍ଲଭ ଜନମ ନ ହେଉ ବୃଥା । ଘୋଷା ।
ହରଷ ହୋଇଣ ସରସ ରସରେ
ଭରସି ଯାଇ ତୁ ଛଡ଼ାଅ ବ୍ୟଥା ।
ଅମୂଲ୍ୟ ପଦାର୍ଥ ସେ ଯେ ପରମାର୍ଥ
ଅପରନ୍ତ ଧନ ଗଣ୍ଠି କରି ଥା । ୧ ।
ନୋହି ହରବର ଭକ୍ତବେଶ ଧର
ଭକ୍ତରେ ଉଚାରି ଗୋବିନ୍ଦ କଥା
ଶ୍ରୀ ଗୁରୁ ଦେବାର ନାମଧନ ସାର
ବାରବାର କରି ବସି ଚେଜୁଥା । ୨ ।
ଖୋଜ ମାଧୁସଙ୍ଗ କର ଭୁକ୍ତି ବେଗ
ଅସାଧୁ ମାନଙ୍କ ସଙ୍ଗରେ ନ ଥା
କୁତର୍କ ଅପଥା ମାର୍ଗକୁ ଛଡ଼ାଇ
ତୋଷ ଦେଇବଟି ସେ ରାଗ ପନ୍ଥ । ୩ ।

କୃଷ୍ଣଲୀଳା ଗୁଣ କର ସୁମରଣ
କୃଷ୍ଣ ଚରିତକୁ କର ତୁ ପୋଥା
ଗୌର ଦ୍ୱିଜ ବୋଲେ ଅକାରଣଟରେ
ନ ଖାଅ ଶମନ ଦୂତଙ୍କ ମୁଥା । ୪ ।

———

[ଚଉପଦୀ]

## ଶ୍ରୀ ରାମନାମ ଭଜନ

ଭଜ ରେ ମନ ! ରାମ ନାମ
ଆନ ଅପୂନେ ଯାଆ ନା ।
ବ୍ୟର୍ଥ କଥାକୁ ସାର୍ଥ ମଣି ତୁ
ଅର୍ଥ ମଦ୍ଭବ ଖାଆ ନା । ଘୋଷା ।
ମାନବ ତନୁ ପୁଣ୍ୟରେ ପାଇ
ଦାନବ ବୁଦ୍ଧି ନ କର ତୁହି
ଯା ନବଘନ କାନ୍ତ ସୁନ୍ଦର
ହିତ ଲକ୍ଷ୍ୟ କର ତା ନାଁ । ୧ ।
ବନ ପବନରେ ଏ ଜୀବ ପୂରି
କଳ୍ପ ଆୟୁଷ ନୁହେ ତୋହରି
ଅଳ୍ପକେ ସରି ଯିବୁଟି ଭଜ
ମୁକତ ପସରା ଯାହା ନାଁ । ୨ ।
କାକର ପରି ଏ ସର୍ବ ବସ୍ତୁ
ଗୃକର ତୁ ଏଥି ନ କର ଚିତ୍ତ
ଦାରା ତନୟ ସ୍ନେହକୁ ଶାକର
ମଣି ତୁ ଠାକର ଖାଆ ନା । ୩ ।

ବର୍ତ୍ତ ହରି ନାମକୁ ବୋଲ
ତର୍କ ଏ ବଡ଼ ସଂସାର ଜାଲ
ହର୍ତ୍ତ ନୁହ ଅକର୍ତ୍ତନଯୁ
ହଜୁରେ ଫଜତ ପାଆ ନା । ୪ ।
ଦ୍ୱିଜ ଗଉର ଚରଣ ଭଷି
ନ ଲଗା ତୁ ଗଳେ ବିଷୟା ଫାସି
ଗୃହ ଙ୍କାରଣରେ ପ୍ରୀତି ନ କର ତୁ
କର ବ୍ରଜପୁରେ ଥାନା । ୫ ।

———

[ପଞ୍ଚଗୃହଣ]

## ଛଟୋକ୍ତ ଭଜନ

ତାଙ୍କୁ କଏ ବୋଲୁଥାଇ ଗୋ! ପରମ ଦୟାଳୁ ହରି ।
କାହିଁ ଦେଖି ଅଛ ମାମୁଁକୁ ଭଣଜା
ଙ୍କାବନେ ପକାଏ ମାରି । ଘୋଷା ।
କାକ କୋଳେ ପିକ ପାଳନ୍ତି ପରାଯେ
ଯେବଥିଲେ ଗୋପନାରୀ ।
ପୋଷନ୍ତା କାଳକୁ ଗୁଣ୍ଡ଼ ପଳାଇଲେ
ରହିଲେ ମଥୁରାପୁରୀ । ୧ ।
ବିଷାଳୋତେ ଶମ୍ଭୁ— ପାଳ ଘର ଆସି
ଥିଲ ବର ବେଶ ଧରି ।
ଚଣ୍ଡୀ ପୁରୁ ଭଣ୍ଡି କନ୍ୟା ଘେନଗଲେ
ଲଜରେ ସେ ଗଲ ଫେରି ।୨।

ରାମ ଅଭିରାମ ରୂପ ଦେଖି କାମ
ଲୋଭେ ସୂର୍ପଣଖା ନାରୀ ।
ଅ.ପିଥିଲା ଆଶା— କରି ତା'ର ନାସା
କାଟି କଲେ ହତଶିରୀ । ୩ ।
ତ୍ରୈଲୋଚନ ବୋଲି ଏକ ଘର ଥିଲା
ହେଲେ ତାର ମନୋହାରୀ ।
କୂଟେ କରି ଚୂଟି ଉପାଡ ତା'ହାକୁ
କେଶକାଟ ଦେଖି ମାରି । ୪ ।
କାନନ ମଧ୍ୟରୁ ଜନକ ସୁତାକୁ
ରାବଣ ଯେ ନେଲା ହରି ।
ବିନା ଦୋଷେ ସିନ୍ଧୁ ବାନ୍ଧି ପକାଇଲେ
ବାଳୀ କ ବିନାଶ କରି । ୫ ।
ବଳୀ ମନ୍ଦିରକୁ ଛଳି ବଞ୍ଚକଲେ
ବାମନ ମୂରତି ଧରି ।
ଭିକାରୀ ହୋଇଣ ଧିକ୍କାର ରୂପିଲେ
ରଖିଲେ ପାତାଳପୁରୀ । ୬ ।
ଜଳନ୍ଧର ଘର ଶାଳକ ତାଙ୍କର
ଯବେ ରହି ତାର ପୁରୀ ।
ହରି ତା ସଙ୍ଗକ ପୁଣି ତା ପତିକ
ହର କରେ ବଧ କରି । ୭ ।
ପାଣ୍ଡବେ ତାଙ୍କର ସୁହୃଦ ବାନ୍ଧବ
ଜାଣନ୍ତି ଏ ତିନିପୁରୀ ।
ଭୀମ ସୁତ ବେଳା— ବଳୀକି ମାଇଲେ
କେଉଁ ଅବଗୁଣ ଧରି । ୮ ।

ପୁତ୍ର ହତ ଶୁଣି ଗୁରୁ ଦ୍ରୋଣ ପୁଣି
ପଡ଼ିଥିଲେ ଜ୍ଞାନ ହାର ।
ମାର ବୋଲି ଧୃଷ୍ଟ ଦ୍ୟୁମନଙ୍କୁ ପରା
ଦେଖି ଦେଲେ ଆଖି ଠାର । ୯ ।
ରାସ ମଣ୍ଡଳରୁ ବ୍ରଜ ଦେବୀଙ୍କି ଯେ
ଘେନି ଗଲେ ଭୁଜ ଧରି ।
ଏକା କରି ଗିରି ଟେକା ଗୁଡ଼ ଗଲେ
କନ୍ଧରୁ ପକାଇ କରି । ୧୦ ।
ଶୁଣ୍ଡଠାରେ ବନ୍ଧ ହୋଇ କୁଶମୁନି
ଭୁଷି ଦେଲେ ସ୍ଥିର କରି ।
ବ୍ରାହ୍ମଣକୁ ଦଣ୍ଡ କଲେ କାହିଁପାଇଁ
କେଉଁ ଅବଗୁଣ ଧରି । ୧୧ ।
ଯେଉଁ ଗୋରୁହତ୍ୟା କଣ୍ଠରେ ଲାଗିଲା
ଗଲେ କେଲାସୁଁ ବାହାରି ।
କଉତୁକେ ଷଣ୍ଢ— ସ୍ବରକୁ ମାଇଲେ
ପାପପୁଣ୍ୟ ନ ବିଚାରି । ୧୨ ।
ଆନ୍ତେ ଗୋପୀମାନେ ଯମୁନାରେ ଯବେ
କରୁଥିଲେ ଜଳକେଳି ।
ବସନ ଚୋରାଇ ବୃକ୍ଷରେ ବାନ୍ଧିଲେ
ମହତ ନେଲେ ଆମ୍ଭରି । ୧୩ ।
ଗଙ୍ଗର ଚରଣ ବୋଲେ ଗୋପୀଗଣ!
ହରଙ୍କ ନିନ୍ଦା ନ କରି ।
ଜଗତ ଯାକର ପ୍ରଭୁ ସେ ଅଟନ୍ତି
ମହାମହିମା ତାଙ୍କରି । ୧୪ ।

———

[ଛପ୍ପାଳଣ]

ଭଗବତ ଭଜନ ମାଳୀ

ଭଗବତ ଭଜନ ମାଳୀ
ଅହରହ କର ଥା ତୁ ଫଙ୍କାଳି । ଘୋଷା ।
ରବିସୁତ ଦଣ୍ଡରୁ ଯଦି
ତାହ୍ମ ଲଭିବୁ ରେ ଦୁର୍ବୁଦ୍ଧି
ଅବିରତରେ ତୁ ରବିପ୍ରିୟାନେତ୍ର
ଗୁଣ କ୍ଷୁଣ ସବ ଜଞ୍ଜାଳ ଟାଳ । ୧ ।
ଧାଇ ଧାଇ କୃଷ୍ଣମୂର୍ତ୍ତିକ
ଭ୍ୟାଇ ମହୋତ୍ସବ ଗ୍ରନ୍ତକ
ଚ୍ୟାଇଁ ଉଠ ଆଉ ମୋହ ନିଦ୍ରାରେ ତୁ
ଘାର ନୁହ ଗୁରୁବଚନ ପାଳ । ୨ ।
ଅସମର୍ଥ ନୁହ ଏଥିକ
ଧର ସାଧୁଜନ ପୋଥିକ
ଦଶ ଦଶା ମାଡ଼ି ଆସୁଛି ଟି ଚୋର
ସେ କଷଣ ପାରିବୁ କ ସମ୍ଭାଳ । ୩ ।
ଆନ ବିଷୟରେ ନ ରସି
ପାନ କର ପୀୟୂଷ ରାଶି
ଗାନ କର ସଦା ରାଧା ହରି ପଦ
ଆନନ୍ଦାଶ୍ରୁମାରେ ନେତ୍ର ପଖାଳ । ୪ ।
ମିଛ ବଣିଜକୁ ବରଜ
ଇଚ୍ଛା ଶୁଭ ସୁଖ ଅରଜ
ଶ୍ରୀ ଛନ୍ଦଣୀପାଦ— ପଙ୍କଜେ ମିଳନ୍ଦ
ହୁଅ ତୁ ଶ୍ରୀବନଜ ଚରଣ ଗୃହ୍ଣ । ୫ ।

ଭ୍ରାନ୍ତ ନୋହି ଶ୍ରାନ୍ତ ଉପେଖି
ପ୍ରାନ୍ତକୁ କ ହୋଇବୁ ଦେଖି
ଦ୍ୱାନ୍ତ ମାଝେ ନେବୁ        ନାହିଁ ତ ସେଥିରୁ
ସଞ୍ଚିରୁ ଯା ଶ୍ରମେ ସଞ୍ଚି ସକାଳ । ୬ ।
ଧର୍ମ କର୍ମେ ଲଗାଇ ସ୍ନେହ
ଇଷ୍ଟଦେବେ ବଳ ଦେ ଦେହ
ଘର୍ମବୁହା ଯେଉଁ        ଅନର୍ଘ୍ୟ ସମ୍ପତ୍ତି
ବତରାଇ ଦେ ତୁ ନ ହୋଇ ଭ୍ରାଳ । ୭ ।
ଦ୍ୱିଜ ଗୌର ଚରଣ କହି
ନିଶ୍ଚିନ୍ତରେ ଶ୍ରୀ ବ୍ରଜେ ରହି
ଉଦର ଖଣ୍ଡକ        ଭରଣ ଲାଗି ତୁ
ମାଗ ମାଧୁକରୀ ମାଗଣ ଡାଳ । ୮ ।

———

[ସଡଗ୍ନଳଣ]

## ଭଜଗୋବିନ୍ଦ ଭଜନ

ଭଜ ଗୋବିନ୍ଦ ସ୍ମର ଗୋବିନ୍ଦ ନିଅ ଗୋବିନ୍ଦ ନାମକୁ ରେ ।
ରଜନୀ ଦିନ କର ଧ୍ୟାନ ଅଜ୍ଞନ ବ ଘନଶ୍ୟାମକୁ ରେ । ଘୋଷା ।
ଶ୍ରୀନାମ ମାଦକ ସେବେଲ ମୋହ ମୂର୍ଚ୍ଛା
ହେଉଥାଅ ଯାମ ଯାମକୁ ରେ
ମାନସିକେ ସେବୁଥାଅ ନିରନ୍ତରେ
ଶ୍ରୀବୃନ୍ଦାବିପିନକାମକୁ ରେ । ୧ ।
ଆନ ବିଷୟରେ ନରସି ନଟିବେ
ରସ ତୁ ବ୍ରଜ ଆରାମକୁ ରେ

ମୂର୍ତ୍ତିରେ ମାଳା ଚଢ଼ାଇ ଆପଣେ
ପୂର୍ତ୍ତିକର ମନସ୍କାମକୁ ରେ ।୨।
ସଖୀଙ୍କ ସଙ୍ଗିନୀ ଚଡ଼କୁ ଆଦର
ଆଶ୍ରେକର ଗୁରୁ ନାମକୁ ରେ
ମାଲିକ ମାଲିକଆଣୀଙ୍କି ଦେଖିବୁ
ଚଳି ଯା ତୁ ନିତ୍ୟ ଧାମକୁ ରେ ।୩।
ପରିକ୍ରମା କର ଯାବଟ ବର୍ଷାଣ
ଗୋବର୍ଦ୍ଧନ ନନ୍ଦଗ୍ରାମକୁ ରେ
ଗୌର ଦ୍ୱିଜ ବୋଲେ କଲ୍ପ [illegible] ମୂଳେ
ନିଶ୍ଚିନ୍ତେ ନିଅ ବିଶ୍ରାମକୁ ରେ ।୪।

---

[ଅଠବୃଳଶ]

## ରାଧେକୃଷ୍ଣ ଭଜନ

ରାଧେ କୃଷ୍ଣ ରାଧେ କୃଷ୍ଣ ରାଧେ କୃଷ୍ଣ ରଟରେ
ଦୁରଜନ ସଙ୍ଗ ମୁଞ୍ଚି ଗୁରୁପାଦେ ଖଟରେ । ଘୋଷା ।
କେତେ ଧନ ରହିବ ଏ ମାଟିପିଣ୍ଡ ଘଟରେ
ଜଞ୍ଜାଳ ଜାଲରେ ପଡ଼ି ନୁହ ଛଟପଟରେ ।୧।
ଧନ ଦାରା ସୁତ ଦେଖି ମନ କରୁ ମୋଟରେ
ମୋର ମୋର ହୋଇ ଛୁଡ଼ୁଅଛୁ ଧର୍ମବାଟରେ ।୨।
ଯମୁନାପୁଳିନ କେଶୀଘାଟ ବଂଶୀବଟରେ
ତ୍ରିଭଙ୍ଗ ଭଙ୍ଗିମାଛନ୍ଦେ ଉଭା ନନ୍ଦଗୃଟରେ ।୩।

ବ୍ରହ୍ମ ଗୋପାଳମୂରତି ଶ୍ରୀକିଶୋର ନଟରେ
ଦର୍ଶନେ କୃତାର୍ଥ ହୁଅ ସଖୀ ବାମ ପଟରେ ।୪।
ହରେ କୃଷ୍ଣ ମହାମନ୍ତ୍ର ଅନୁକ୍ଷଣେ ରଟରେ
ରାମନାମ ଖଣ୍ଡା କର ପାପତାପ କାଟରେ ।୫।
ଯାଦବ ଭଗବତ ବାଣୀ ଶୁଣ କର୍ଣ୍ଣପୁଟରେ
ଯାଦବ ଭଣେ ଦ୍ୱିଜ ଗୌର ଅବଧୂତ ଘାଟରେ ।୬।

---

[ଅଶରୁଣ]

## ଗୋବିନ୍ଦଗୋପାଳ ଭଜନ

(ରାଗ ବଡ଼ବଙ୍ଗଳାଶ୍ରୀ—ତାଳ ଝୁଲ)

[ଭଜରେ ମନ ରାମନାମ ଆନଅମୃତେ ଯାଆ ନା—ବୃତ୍ତ]

ଭଜ ରେ ମନ ! ଗୋବିନ୍ଦ ଗୋପାଳ ଚନ୍ଦ୍ରରେ ମନ ହରିଙ୍କି
ଅକ୍ରୂର ଉଦ୍ଧବ ଧ୍ରୁବ ପ୍ରହ୍ଲାଦ ନାମ ଝଟିଗଲେ ତରି କା ।ଘୋଷା।
ମାରିଲେ କଂସକ ତାରିଲେ କଂସକ ସୁଦୟା ହୃଦୟେ ଭରିକ
ମାରିଲେ ନାଗକ ତାରିଲେ ନାଗକ ହୋଇ ହିତମନେ କେଶରୀ କ ।୧।
ମାରିଲେ ବାଳିକ ତାରିଲେ ବାଳୀକ ସୁହୃଦପଣ ଆଚରିକ
ମାରିଲେ ହରଣୀ ତାରିଲେ ହରଣୀ ଦୁଇଗୁଣ ସମ ସରିକ ।୨।
ଭକ୍ଷିଲେ ଅନଳ ରକ୍ଷିଲେ ଗୋକୁଳ ଗୋବର୍ଦ୍ଧନ ଗିରି ଧରିକ
ଭୁଞ୍ଜିଲେ ଅଇଁଠା ଫଳ ମିଠା ମିଠା ସୁଗତି ଦେଲେ ଶବରୀ କ ।୩।
ମାରଣ ତାରଣ ଜୀବ ଉଦ୍ଧାରଣ ଅଛୁ କେ ବା ତାଙ୍କ ପରି କ
ଗଉର ଚରଣ ଦୃ କର ଶରଣ ରକ୍ଷଣେ ହେବେ ସେ ଚରି କ ।୪।

---

[ପଚାଶ]

## କୃଷ୍ଣକଥା ଭଜନ

ରାଗ ଘଣ୍ଟିଆରି—ଏକତାଳୀ

ଆରେ ସୁରସନା ! କୃଷ୍ଣ କଥା ବିନେ ଆନେ ତୁ ରସ ନା । ଘୋଷା
ଅନବରତରେ ହୋଇ ତୋଷ ଅଦ୍ୱୈତବ ଭାବ ନିତ୍ୟ ଘୋଷ
ନନ୍ଦନନ୍ଦନାନନ୍ଦଇନ୍ଦୀବରଚନ୍ଦ୍ର କନ୍ଦର୍ପସୁନ୍ଦରଗୁଣ ଘୋଷ ।୧।
ଅଖିଳ ରସ ଅମୃତ ସିନ୍ଧୁ, ବ୍ରଜ ବଧୂଜନ ପ୍ରାଣବନ୍ଧୁ
ଶ୍ରୀମଧୁସୂଦନ ମଧୁମିଶ୍ର ନାମ ମଧୁକୁ ଚାଖ ତୁ ବିନ୍ଦୁ ବିନ୍ଦୁ ।୨।
ଆଳସୀ ନ ହୋଇ ତୁ ନିମିଷେ ଲାଳସୀ ହୁଅ ଏ ସୁଧାରସେ
ମାଳଶ୍ରୀ କରଣ ହରେକୃଷ୍ଣ ନାମ କାଳ ବଞ୍ଚିଥାଅ ନିଶିଦିବସେ ।୩।
ସୌରଭ କେମନ୍ତ ନାମ ପଣା ଆଜଯାଏ ତୋତେ ନୋହେ ଜଣା
ଗୌରଦ୍ୱିଜବୋଲେ ଗୌରବପ୍ରତିଷ୍ଠା ଛାଡ଼ିଲେ ଅନୁଭବିବୁ ସିନା ।

---

[ଏକାବନ]

## ଶ୍ରୀକୃଷ୍ଣସେବା ଲାଳସା

ସତେ କି ଏକ ଜନମ ବ୍ରଜପୁରରେ ମୁଁ ବଞ୍ଚିବି ।
କୃଷ୍ଣ ଶ୍ରୀମୁଖକୁ ଚାହିଁ କୋଟିଦୁଃଖ ମୁଞ୍ଚିବି ।ଘୋଷା।
ପ୍ରଥମେ ଭେଟେ ସମୟେ ପଡ଼ିବି ଅମ୍ବୁଜପାଏ ।
ଉଠି ଶିରେ ଯୋଡ଼ି କର ଦିବ୍ୟ ସ୍ତୁତି ରଚିବି ।୧।
ତନୁ ନେବ ; ରୋମୋଦ୍‌ଗମ ପୁଲକେ ପରିବ ହେମ ।
ନେତ୍ରନୀର ସତେ ମୋର ଉରପରେ ସିଞ୍ଚିବି ।୨।

ପୁଣ ଚରଣେ ଚଢ଼ିବ ଆନନ୍ଦ ହୋଇ ଗଡ଼ିବ ।
ପାଦ ପଦ୍ମ ଚନ୍ଦ୍ରଧୂଳି ମସ୍ତକରେ ବାନ୍ଧିବ । ୩ ।
ମଥୁରା ଯିବାକୁ ସଜ ହେଲ୍ୟବଲେ ଦେବରାଜ ।
ଚଢ଼ଫଲାଗି କରାଇ ପିନ୍ଧାଫେର କୁଞ୍ଚିବ । ୪ ।
ଗୌରଦ୍ୱିଜବୋଲେ ହେଲେ ରଥ ବାଜକଲାବେଳେ
ଭ୍ରମର ଧରଣ କରେ ଧୀରେ ଧୀରେ ବାନ୍ଧିବ । ୫ ।

———

[ବାଉନ୍]

## ଯୁଗଳସେବା ଲାଳସା

(ନ ଚେଳବ ମୂରଲୀ ଧରା—ବୃତ୍ତେ)

ମନେ ହେଉ ନାହିଁ ପରତେ ।
ଏମନ୍ତ ସୁଭାଗ୍ୟ ଘଟିବ ମୋତେ । ଘୋଷା ।
କୁଞ୍ଜ ସ୍ୱାମିନୀଙ୍କ ଲାଗି ନିଶାନ୍ତରୁ ଉଠିବ ଜାଗି
ମଙ୍ଗଳ ଆଳତି କାଳେ ଦରଶନ
କରିବ ଦୁହିଁଙ୍କି ଏ ପାପ ନେତ୍ରେ । ୧ ।
ଭୁଜବଦ୍ୟା ସଖୀଙ୍କ ଯୁଥେ ଗୁଣଚୂଡ଼ା-ମଞ୍ଜରୀ ମତେ
ମୋ ଶ୍ରୀଗୁରୁରୂପା ସଙ୍ଗିନୀଙ୍କ କୃପା
ଅପାଙ୍ଗେ ସ୍ୱସେବା ପାଇବ ସତେ । ୨ ।
ମହା ପଦ୍ମ ରତ୍ନ-ସଦନରେ ସେ ସପ୍ତମ ଦଳମଧ୍ୟରେ
ଧନ୍ୟାମଞ୍ଜରୀଙ୍କ ବାମେ ରହି ତାଙ୍କ
ଆଦେଶେ ଖଟିବ କୁଞ୍ଜ ପୁରତେ ।୩।

ଦ୍ୱିଜ ଗୌର ଚରଣ କହେ ସିଦ୍ଧ ହେବ   ପ୍ରାପ୍ତିର ସ୍ନେହେ
ମାନସିକ   ଭାବେ   ଆଭଗ୍ନ-ସ୍ୱଭାବେ
ଅମ୍ଳାନ୍ତମାନ ମୁଁ ଫଗ ସନ୍ତତେ । ୪ ।

———

[ଚେଫନ]

## ଯୁଗଳ ଚରଣ ଭଜନ

( ଯିବ ରେ ଯିବ ଏ ଜୀବ ଦିନେ ଗୃଳଯିବ ରେ ବୃତ୍ତ )
ଭଜଭଜ   ଆରେ   ମନ   ଯୁଗଳ   ଚରଣକୁ
ନରହିବ ତୋରଭୟ ଆଉ ଜନ୍ମରଣକୁ । ଘୋଷା ।
ଛାଡ଼ି   ଏ   ଘରଦୁଆର   ପଲା   ବଜବନକୁ ।
କଣ୍ଟା କାଟି ଅଛୁ ଦିନ ଏଥି ଅକାରଣକୁ । ୧ ।
ଦେଖି ନାହୁଁ କି ତୋ ଆଗେ କେତେକେତେ ଜଣଙ୍କୁ
କେ କସ ମୁଣ୍ଡାଇ ନେଲେ ଧନ ବଡ଼ପଣକୁ । ୨ ।
ବିଶ୍ୱାସ ତୁ ନ ଯା ଦାରାସୁତ ବନ୍ଧୁଗଣକୁ ।
ଚହିଛନ୍ତି ସେ ଅନାଇଁ ତୋହର ମରଣକୁ । ୩ ।
ଛଡ଼ାଇବା   ପାଇଁ   ମହାପାତକଭରଣକୁ ।
କି ଲକ୍ଷେ ତୋଷିବୁ ଅବା ଯମର କରଣକୁ । ୪ ।
ମୁଣ୍ଡ ମୁଣ୍ଡ ରେ ଅନାଡ଼ି ! ମନ୍ଦ-ଆଚରଣକୁ ।
ନ ପକା ଜଞ୍ଜାଳଜାଲେ ଗଉର ଚରଣକୁ । ୫ ।

———

[ଭଜନ]

## ରାଧେଗୋବିନ୍ଦ ଭଜନ

ରାଧେ ଗୋବିନ୍ଦ ଭଜ          ରାଧେ ଗୋବିନ୍ଦ ଭଜ
ନନ୍ଦନନ୍ଦନ ବଂଶୀବଦନ ବୃନ୍ଦାବନଚନ୍ଦ୍ର ଭଜ । ଘୋଷା ।

ମାୟାମୋହ ହିଂସା କାମ କ୍ରୋଧ ଲୋଭ
ଏହାଙ୍କ ସଙ୍ଗରେ କପାଇଁ ମଜ
ହରେକୃଷ୍ଣ ରାମ ଅମୃତ ସାଗର
ସାଧୁଜନ ପାଶେ ପଚାରି ବୁଝ ।୧।

କେଶବ କଂସାରି ରାମ ଦଇତାରି
କଂସ ନାଶି କଲେ ବୁକୁଜା ଋଜ
କୃଷ୍ଣ ନାରାୟଣ ନୃସିଂହ ବାମନ
ବଳିଶିରେ ଦେଲ ଯେ ପାଦରଜ ।୨।

ଦପୂଣାଭୂଷଣ ନାଶିବେ କଷଣ
ଦୃଢ଼େ ଭଜୁଥିବୁ ପାଦ-ସରୋଜ
ଶ୍ରୀବୃନ୍ଦାବନରେ ନାନାରଙ୍ଗେ କେଳି
ଗୋପ ସୁତ ସଙ୍ଗେ ବରଜରାଜ ।୩।

ହରଣୀ ବପତି ହରିଲେ ଶ୍ରୀପତି
ଗ୍ରାହା ମାରି ତାରି ରଖିଲେ ଗଜ
ଏବେ ନୀଳାଚଳେ ରହି ଜଗନ୍ନାଥେ
ଭକ୍ତପାଇଁ ଟେକ ଅଛନ୍ତି ଭୁଜ ।୪।

ଅଚ୍ୟୁତ ମୁକୁନ୍ଦ ମାଧବ ମୁରାରି
ପତିତପାବନ ଗରୁଡ଼ଧ୍ୱଜ

ପ୍ରହଲ୍ଲାଦ ଛଳେ ସ୍ତମ୍ଭରୁ ବାହାର
ନଖେ ବିଦାରିଲେ ହିରଣ୍ୟରାଜ ।୫।
ନରୋତ୍ତମ ନରହରି ହରେକୃଷ୍ଣ
ଭଜ ତୁ ଅଭୟ ପାଦ ପଙ୍କଜ
ଯେଉଁ ପାଦପଦ୍ମେ କାଳୀକ ଦଳିଲେ
ହୋଇଣ ମଦନ ମୋହନ ସଜ ।୬।
ଇନ୍ଦ୍ର ବିବାଦରେ ମନ୍ଦର ଧଇଲେ
ହାରି ସୁରପତି ପାଇଲା ଲାଜ
ଗଉର ଚରଣ ଶରଣ ମାଗଇ
କାରଣ କରିବେ ଦେବାଧିରାଜ ।୭।

———

[ପଞ୍ଚାବନ]

ବୈରାଗ୍ୟବୋଧ ଭଜନ

[ ପତିତ ପାବନବାନା ଆଜ କେତେ ବେଳକୁ— ବୃତ୍ତରେ ]
ଭୁଲିଗଲୁ ତୁ ଘୁଁଘୁଁ ଗୁଁଘୁଁ ଚଟକୋଆ ହେଲୁ ତ
ଭୁଣ୍ଡରେ ଥରେକ ହେଲେ କୃଷ୍ଣ ନ ବୋଇଲୁ ତ । ଘୋଷା ।
ଦାରା ତନୟଙ୍କ ସେହେ ବୃଥା ଚାରେ ମାୟାମୋହେ
ବିଷମ ଜଞ୍ଜାଳେ ପଡ଼ି ଦିନ କାଳ ନେଲୁ ତ ।୧।
ଦାମ୍ଭିକ କୃପଣପଣେ ବଡ଼ମା ଗର୍ବେ ଆପଣେ
ଶ୍ରୀଗୁରୁ ପ୍ରଦତ୍ତ ବୀଜମନ୍ତ୍ର ତେଜ ଦେଲୁ ତ ।୨।
ଏକ ତୋହର ତୁ କାହାର ଦିନେ ହୋଇବୁ ବାହାର
ଦଣ୍ଡଧର ଦଣ୍ଡୁ ଆହ୍ୱା ହେବା ନ ଚିହ୍ନିଲୁ ତ ।୩।

ଆଣି ଦେଖାଇ ଦେଉ ଯା ଠାଣିରୁ ଟାଇ କ ମଜା
ଜାଣି ଜାଣି ସନ୍ଥଜନ ବାଣୀ ଦୂରେ ଠେଲୁ ତ ।୪।
ଗୌର ଦ୍ୱିଜ ବୋଲେ ମନ ! ହରିଅନା ମୂଳଧନ
ସମ୍ପାଦ କର ଯତନ କହେଁ ଏତେବେଳୁଁ ତ ।୫।

———

[ଛଟନ]

ବୈରାଗ୍ୟ ସୂଚକ ଭଜନ

ରାଗ ଶଙ୍କରାଭରଣ । ତାଳ ଆଠତାଳୀ

[ଭଜ ରାଧେ କୃଷ୍ଣ ବୋଲ—ବୃତ୍ତ]

ମନ ତୁ ଏତେ ଅବୋଧ !
ସୁପଥ ଛାଡ଼ି କୁପଥେ ବଳାଇଲୁ ପଦ । ଘୋଷା ।
ବନ୍ଦୀ ହୋଇ ଅକାରଣେ ମାୟାମୋହ ଘରେ
କାହିଁକି ଆସିଛୁ ଭବେ ନ ଚିହ୍ନିଲୁ ଥରେ ।୧।
ଇଚ୍ଛାରେ ପାତକ ପୁଞ୍ଜି ସଦା ଟୁଡ଼ପାଳୁ
ପ୍ରବୋଧ ପ୍ରଦୀପ ହୃଦ ମନ୍ଦିରେ ନ ଜାଳୁ ।୨।
ଧନ ମଦେ ମତ୍ତ ହୋଇ ସବୁ ବୋଲୁ ମୋର
ଏ ବଡ଼ାଇ ଛଡ଼ାଇବ କାଳପାଶଡୋର ।୩।
ମିଛବଣିଜରେ ଚଣି ହେଉ ସିନା ବଣା
ଅନ୍ତକାଳେ ଜଣାଯିବ ତୋର ବୁଝାମଣା ।୪।
ଥିବୁ କ କାଳକଯାକ ଚିରଞ୍ଜୀବୀ ହୋଇ
ମଶାଣି ଭୂଇଁରେ ଦିନେ ଶୋଇବୁ ରେ ଯାଇ ।୫।

ବାହାର ଫନ୍ଦିବ ମଲ୍ଲବେଳେ ସବୁ ମଜା
ଗୋଡ଼ାଇ ନସିବେ ସଙ୍ଗେ ତୋ ପୁଅ ଭାରଜା ।୬।
ଗୌର ଦ୍ୱିଜ ବୋଲେ ଭଲି ଗତି ଥିଲେ ତୋର
ସବୁ ଛୁଡ଼ି ହରେକୃଷ୍ଣ ନାମ କର ସାର ।୭।

---

[ଶତାବନ]

## ନାମାମୃତ ଝଙ୍କାର ଭଜନ

(ତାଳ ଆଠତାଳି)

ଚିନ୍ତାମଣି ବେଣୁପାଣି ନାମକୁ ଚିନ୍ତରେ ମନ !
ଧାମ-ଗୋଲକ ପାଇବୁ ବାମ ନୋହିବ ଶମନ । ଘୋଷା ।
ଶ୍ୟାମ ଅଭିରାମତନୁ   କାମ ମୋହନ ଅତନୁ
ରାମ ଅନୁଜଙ୍କ ବିନୁ   ଗତି ନାହିଁ ତ୍ରିଭୁବନ ।୧।
ଦାମ ସୁବଳ ସଙ୍ଗିଆ   ରଙ୍ଗିଆ ଭୁରୁଭଙ୍ଗିଆ
ବାମନେତ୍ର ଅପାଙ୍ଗିଆ   କାମନା କରିବେ ପୂର୍ଣ୍ଣ ।୨।
ଯାମଳା ଭଞ୍ଜନକାରୀ   ସର୍ବ ପାପ ତାପହାରୀ
ଧାମ ନିକୁଞ୍ଜ ବିହାରୀ   ପାନ ବୃତକର ଦନ ।୩।
ତାମରସ ପଦଯୁଗ   ତହିଁ ହୁଅ ମତ୍ତଭୃଙ୍ଗ
ଚାମର ଗଉର ଦ୍ୱିଜ ବୋଲେ ତୁ ହୋଇବୁ ଧନ୍ୟ ।୪।

---

## [ଅଠାବନ]

### ମାନଉଦ୍ଧାରଣ ଭଜନ

ଯିବୁ ଯେବେ ଆର ପାରକ
ମାନ ମୋର ବୋଲ ଭଜ ହରିଙ୍କି
ଆନରେ ନ ରସି ଧ୍ୟାନ କର ବସି
ମାନଉଦ୍ଧାରଣ ଦାନବାରିଙ୍କି । ଘୋଷା ।

ଜ୍ଞାନଯୋଗ ସାଧିବୁ କାହିଁ ଦାନ ଧର୍ମେ ପାରିବୁ ନାହିଁ
ଥାନ କର ବ୍ରଜକାନନରେ ଯାଇ
ତାନମାନେ କରତାଳ ମାରିକ ।୧।

ଶ୍ୱାନ ବୃତ୍ତି ଧରି ତୁ ଆପେ ଆନନ୍ଦରେ ଭ୍ରମୁଥା ଗୋପେ
ହା ନନ୍ଦନନ୍ଦନ ରାଧେ ରାଧେ ବୋଲି
ଗାନ କର ସନ୍ତ ବ୍ରଜନାରୀଙ୍କି ।୨।

ନାନାସ୍ଥାନ ନୁହ ବୃଥାରେ କାନ ଡେର କୃଷ୍ଣକଥାରେ
ଯା ନବରସରେ ମଜ୍ଜିଛନ୍ତି ସନ୍ଥେ
ତା ନ ଆଦରୁଛୁ କ ବର୍ବରକ ।୩।

ସ୍ନାନ ସାରି ଶ୍ରୀକୁଣ୍ଡମାରେ ଦାନ ଘାଟୀ ଧୀର ସମୀରେ
ସାନନ୍ଦେ ବିହର କହେ ଦ୍ୱିଜ ଗୌର
ପାନ କର ଶ୍ରୀ ଯମୁନାବାରିକ ।୪।

---

## [ଅଣଷଠି]

### ବ୍ରଜବାସ ଲାଳସା

ସତେ ମୋତେ ଗୁରୁଙ୍କର ଆଜ୍ଞା ହେବ କୃଷ୍ଣକଥାରେ ମୁଁ ରସିବ,
ଶ୍ରୀରାଧା ଗୋବିନ୍ଦ ବୃନ୍ଦାବନଚନ୍ଦ୍ର ନାମ ଅନ୍ତରରେ ଘୋଷିବ ।ଘୋଷା

ଦାସସୂତ ବତ୍ତେ ଚତ୍ତ ନ ରସିବ କକ ପର ତହୁଁ ଖସିବ
ଚିନ୍ତା ଦୂର କର ଅଚିନ୍ତା ହୋଇ ମୁଁ ଚିନ୍ତାମଣିସ୍ଥଳେ ପଶିବ ।୧।
ସନ୍ତ ଭକ୍ତଙ୍କ ସଙ୍ଗେ ଅନୁରକ୍ତ ଆଜ୍ଞା ମାଗି ପାଶେ ବସିବ
ତାଙ୍କ ଶ୍ରୀପଦ୍ମରହେମାବ୍ଜକୁ ମୋର ଉରକଷଟିରେ କଷିବ ।୨।
ଦ୍ୱାରେ ଦ୍ୱାରେ ଫେର ଭିକ୍ଷା ମାଧୁକରୀ ମାଗି ଏ ପେଟକୁ ପୋଷିବ
ମାଶ କରତାଳ ନାଚ ତଳ ତଳ ସେମାନଙ୍କ ମନ ତୋଷିବ ।୩।
ରାଧାକୁଣ୍ଡ ଜଳ ଜମ୍ବାଳକୁ ଗୋଳ ଉର ଉତ୍ତମାଙ୍ଗେ ଘଷିବ
ଯେତେ ଥିବ ସଂସାର ଦୁର୍ବାସନା ତେବେବେଳେ ସିନା ନାଶିବ ।୪।
ବୈଷ୍ଣବ ପଦ୍ମର ଧୌତ ନୀର ମୋର ତୃଷ୍ଣା ତୂର୍ଣ୍ଣକର ଶୋଷିବ
ଆନନ୍ଦରେ ଭୋଳହୋଇ ବେନତୋଳ କପାଳରେ ନେଇ ଖୋଷିବ ॥
ଶ୍ରୀହରମନ୍ଦର ଛାପା ନାମାକ୍ଷର ଚିହ୍ନ ବାହୁ ଉରେ ଭୂଷିବ
ଶ୍ରୀନନ୍ଦନନ୍ଦନ ପଦଦ୍ୱନ୍ଦ ଧ୍ୟାନ କର ପ୍ରେମାନନ୍ଦେ ଭାସିବ ।୬।
ଗୌରଦ୍ୱଜ ଭାବେ ସାଧୁ କୃପାବଶେ ଯେବେ ସେ ଗୋଷ୍ଠୀରେ ମିଶିବ
ତେବେ ସେ ନକର ବ୍ରଜବାସୀଙ୍କର କଙ୍କର ପଦରେ ବଶିବ ।୭।

---

[ଷାଠିଏ]

## ବୃନ୍ଦାବନ ବାସ ଲାଳସା

[ବ୍ୟଥିତ କଥିତ ଧନୀ ଗିର ବୃତ୍ତେ]

କର ଅନୁକମ୍ପା ବନଦେବ
ଶ୍ରୀ ବନେଶ୍ୱରୀ ସେବକୀ ହେବ
ସତେ କକ ମୁହିଁ ବୃନ୍ଦାବନେ ଯାଇ
ଶ୍ରୀକୁଞ୍ଜେ ଏ ମଥା ଟେଖାଳିବ
ଗୋ ବୃନ୍ଦାଦେବ !
ଦନ ହରିବ ଯୁଗଳ ପଦ ସେବା ।୧।

ଖର୍ଜୁର ଭଣ୍ଡୀର ଭଦ୍ର ବନେ
ବହୁଳ ସତେ ମୋଦେ ମନେ
ନିକୁଞ୍ଜେ ମଦନମୋହନ ଦର୍ଶନେ
ଧନ୍ୟ ହେବ ସେହି ନିତ୍ୟ ଧନେ
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବା ।୨।
ସିଦ୍ଧ ଗିରିରାଜ ଗୋବର୍ଦ୍ଧନ
ସୁଖାନନ୍ଦେ କରି ପ୍ରଦକ୍ଷିଣ
ଯାବଟ ବର୍ଷାଣ ନନ୍ଦଗ୍ରାମ ସ୍ଥାନ
ବିଲୋକିବି ଗୋପ ସ୍ତ୍ରୀମାନ
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳପଦେ ସେବି ।୩।
ଗୋବିନ୍ଦ ଘାଟେ ଗୋବିନ୍ଦ ରୂପ
ଦର୍ଶନେ କାଟିବି ମନ ତାପ
ପ୍ରେମାଶ୍ରୁରେ ହୃଦ ପଙ୍କିଳ ହୋଇବ
ଛଡ଼ାଇବ ଆଜନ୍ମର ପାପ
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୪।
ରାସସ୍ଥଳୀଠାରୁ ଯିବି ଚଳି
ଗୃହିବି ଗୋପୀଙ୍କ ପାଦତଳି
ଆଶା କରିଅଛି ଏ ଗୌରଚରଣ
ଅର୍ଜିବ କି ପୁଣ୍ୟ ତେଡ଼େ ଭଳି
ଗୋ ବୃନ୍ଦାଦେବି !
ଦିନ ହରିବ ଯୁଗଳ ପଦ ସେବି ।୫।

---

[ଏକଷଠି]

## କଳତାରଣ ଭଜନ

ଯା ଯା ମନ ! ବୃନ୍ଦାବନ ମାୟାରେ ପଡ଼ ନା ।
ମୋର ବୋଲ ତୁ ଘେ'ର ସଂସାରସାଗରେ ବୁଡ଼ ନା ।ଘୋଷା।
ଦେଖ ଏ କଳିକାଳବ୍ୟାଳ ଅନ୍ତର୍ହି କଠୋର ଗରଳ ଜାଳ
ଗୁଣିଆଁ ଶ୍ରୀ ଗୁରୁଗାରୁଡ଼ମନ୍ତ୍ର ହେଲେ ତୁ ହୁଡ଼ ନା ।୧।
ସଡ଼ାଇବ ତନୁ ତ୍ରିତାପତାପ କଡ଼ାଇବ ନେତ୍ର ସନ୍ତାପ ଆପ
ଛଡ଼ାଇବୁ ଯେବେ ବୈଷ୍ଣବଙ୍କ ଧରଥା ଦୃଢ଼େ ନାଁ ।୨।
ତର୍କ ଜନଙ୍କ ସଙ୍ଗ ମୁଞ୍ଚ ବିତର୍କ କରିବେ ଟି ଘୁଞ୍ଚ
ହର୍ଷିତ କରି ଭୁଲାଇ ମାରିବେ ଜାଣି ତୁ ଜଡ଼ ନା ।୩।
ସାଧୁଙ୍କ ବଚନ ମଧୁର ପର୍କ ଶ୍ରୁତି ମୁଖେ ମାଧୁରୀକ ତୁ ପର୍ଶ
ଅର୍ଷିତ ହୋଇ ଯିବୁ ଟି ମୂର୍ଖପଣରେ ଏଡ଼ ନା ।୪।
ଝଷିତ ଦ୍ୱିଜ ଗଉର ଏବେ ଦାସୀତନୁକୁ ଲଭିବୁ ଯେବେ
ଆଶ୍ରିତ କର ଶ୍ରୀଗୁରୁଚରଣ ବ୍ୟର୍ଥରେ ସଡ଼ ନା ।୫।

---

[ବାଷଠି]

## ଶ୍ରୀବୃନ୍ଦାବନଧାମ ଭଜନ

ରେ ମୂଢ଼ମନ ବୃନ୍ଦାବନ ଧାମକୁ ଭଜୁଥା ।
ଶ୍ୟାମନାଗର ପ୍ରେମସାଗରେ ନିରତେ ମଜୁଥା ।ଘୋଷା।
ଶୁକ ପିକ ଭୃଙ୍ଗ ମୟୂର ଗାନ କରି ହରି ନାମ ଉତ୍କୃଷ୍ଟ ତାନ
କାନକୁ କେଡ଼େ ମଧୁର ଲାଗୁଛି ମନରେ ହେଜୁଥା ।୧।
ଶ୍ରୀବ୍ରଜମଣ୍ଡଳ କେମନ୍ତ ସ୍ଥାନ ନିଷ୍ଟଳ ସେ ସ୍ଥଳ କର ତୁ ଧ୍ୟାନ
ଧନକୁ ଧନ ତୁ ମନକୁ ବୁଝାଇ ମାନକୁ ତେଜ ଥା ।୨।

ଯତନେ ସଜ୍ଜନ ସଙ୍ଗ ଅର୍ଜ୍ଜ  ଉଚ୍ଚେ ହରି ନାମ ଧରି ତୁ ଗର୍ଜ୍ଜ
ବରଜବାସୀଙ୍କ ଚରଣରଜରେ ଅଙ୍ଗକୁ ମାଜୁ ଥା ।୩।
ଦ୍ୱିଜ ଗଉର କହେ ଏ ଘୋଷ  ସେ ବ୍ରଜସ୍ଥଳେ କରି ତୁ ଆଶ
ବ୍ରଜ ଉପାସିକ ସାଧକ ସିଦ୍ଧ ଜନଙ୍କୁ ଖୋଜୁ ଥା ।୪।

---

[୧୦୪୦]

ବ୍ରଜବାସ ଲାଳସା ଭଜନ

ଉଠ ମନ ବୃନ୍ଦାବନକୁ ଯିବା ଆଉ ମଠ ମଠ କାହିଁକି
ଏ ଘଟ ଚୋର  କେତେ ଦିନ ରହିବ
ଏ କଥା ଚେତନା ନାହିଁକି ।ଘୋଷା।
ସଖୀ ସହିତରେ  ଦର୍ଶନ କରିବା
ନବ କିଶୋରୀ କହ୍ନାଇଁକି
ଶ୍ରୀ ଗୁରୁ ସଙ୍ଗିନୀ  ଜଞ୍ଜାଳ କରିବା
ନୂଆ ଦାସୀ ହେବା ପାଇଁକି ।୧।
ସେବାରେ ତତ୍ପର  ହେବା ବାରବାରି
ଦ୍ୱାରେ ନିକୁଞ୍ଜ ରହିକି
କେ ବାରଣ କରି  ପାରେ କି ଏଥିକି
କେବଣ କାରଣେ କାହିଁକି ।୨।
ନୟନ ସଫଳ  କରିବା ଶ୍ରୀ ବ୍ରଜ
ଅପୂର୍ବ ବିପିନ ଗୃହିଁକି
ରାଧେ ଶ୍ୟାମ ବୋଲି  ନାଚିବା ଗାଇବା
ପ୍ରେମ ମାଧୁକରୀ ଖାଇକି ।୩।

କନ୍ଧେ ବହି ଝୁଲି ଘେରେ ଝୁଲି ଝୁଲି
ସେ ଦେଶେ ହୋଇବା ବାଇ କି
ଗୌର ଦ୍ୱିଜ ଭଣେ ଶ୍ରୀ ଯମୁନା ବନେ
ମଗ୍ନ ହେବା ଅବଗାହିକ ।୭।

———

[ଚଉଷଠି]

## ବୃନ୍ଦାରଣ୍ୟ ସ୍ମରଣ ଭଜନ

[ଗଲଣି ତ ଗଲ୍ପ କଥାରେ ସଙ୍ଗୀତ ବୃତ୍ତେ]

(ରାଗ ତୋଡ଼ିପରଜ--ଆଦିତାଳ)

କେଡ଼େଶୋଭି କୁଞ୍ଜବନ ଗୋ ସଜନ !
କେଡ଼େ ଶୋଭି କୁଞ୍ଜବନ
ନାନା କୁସୁମିତ ତରୁଲତା ବ୍ରାତ
ଅନା ଅନା କି ଯତନ । ଘୋଷା ।
ଯହିଁ ବିହରନ୍ତି ମାଳମଣି ହାଣ୍ଡି
ଯଶୋଦା ନନ୍ଦନନ୍ଦନ
କି ଉପମା ଦେବା ସରିକି ମଘବା-
ନିଳୟ ନନ୍ଦନ ବନ ଗୋ ।୧।
କୁନ୍ଦନ ପ୍ରତିମା ବୃଷଭାନୁ ଜେମା
ଯହିଁ କରେ ବିହରଣ
ଭୂମି ଚିନ୍ତାମଣି କଳ୍ପଦ୍ରୁମ ଶ୍ରେଣୀ
ଅଗଣନ ବିଦ୍ୟମାନ ଗୋ ।୨।

ଶୁକ ପିକ ସାରୀ ମୟୂର ମୟୂରୀ
ଭୃଙ୍ଗ ଭ୍ରମରିକାଗଣ
ଜୟ ରାଧେଶ୍ୟାମ ବୋଲକ ସୁଷମ
କରୁଛନ୍ତି ମୃଦୁ ଗାନ ଗୋ ।୩।
ଚରି ଚରନ୍ଦନ ବସନ୍ତ ରାଜନ
ଷଡ଼ଋତୁ ସହିତେଣ
ସେବଇ ସନ୍ତତ ଯୁଗଳ ଚରଣ
ଫୁଟାଇ ସବ ସୁମନ ଗୋ ।୪।
ରତ୍ନ ବେଦିକାରେ ରତନ ଆସନେ
ବିଜୟେ ରାଧା ମୋହନ
ସତେ ଏଡ଼େ ଭାଗ୍ୟ ଦରଶନ ଯୋଗ୍ୟ
ହେବ ଗଉର ଚରଣ ଗୋ ।୫।

---

[ଚଉଷଠି]

## ବୃନ୍ଦାବନ ବାସ ଭଜନ

(ମାନିନୀ ରତନୀ ଧନୀ ମାନ ତେଜ ଏଣିକ—ବୃତ୍ତେ)

ଚାଲ ମନ ! ବୃନ୍ଦାବନ କୁଞ୍ଜନ୍ତରେ ରହିବା
ଏଥି ଥାଇଁ କାହିଁ ପାଇଁ ଏତେ ଦୁଃଖ ସହିବା । ଘୋଷା ।
ପୂର୍ଣ୍ଣିମାସଙ୍କ ସମୁରେ ମନବାଞ୍ଛା କହିବା
ଦାରସୁତ ଗୃହ କରି ଘରି କପ ସହିବା ।୧।
ବ୍ରଜବାସୀଙ୍କ ସେବାର ଅନୁଗତ ହୋଇବା
ସାଷ୍ଟାଙ୍ଗ ହୋଇଣ ତାଙ୍କ ପାଦତଳେ ଶୋଇବା ।୨।

ତୁଣ୍ଡେ ରାଧାକୃଷ୍ଣ ବୋଲ କୁଣ୍ଡେ ଅବଗାହିବା
କଳିକଲୁର କଲୁଷ ଅଳ୍ପକାଳେ ଦହିବା ।୩।
ନର୍ତ୍ତନ-କୀର୍ତ୍ତନ କରି ହରିନାମ ଗାଇବା ।
ଆନନ୍ଦ ହୋଇଣ ଊର୍ଦ୍ଧେ କରତାଳି ବାଇବା ।୪।
ଗୌର ଦ୍ୱିଜ ବୋଲେ ମାଧୁକରୀ ମାଗି ଖାଇବା
ନନ୍ଦସୁତ ଭଜି ପ୍ରେମାନନ୍ଦସୁଖ ପାଇବା ।୫।

---

[ଛଅଟି]

## ଶେଷଯାମ ଭଜନ

(ରାଗ କରୁଣାଶ୍ରୀ ତାଳ ଆଠତାଳୀ)

[ନରମେ କହିଲେ ମରମେ ବାଧୁଛି—ବୃତ୍ତ]

ଜୀବନ ପ୍ରଦୀପ ହେଲା ଦପଦପ
ପ୍ରବେଶ ହୋଇଲା ଶେଷ ଯାମ
ଶ୍ରୀବଂଶୀବଦନ ଶ୍ରୀମଧୁସୂଦନ
ରଟ ରେ ରସନା ! ନୋହି ଭ୍ରମ ।ଘୋଷା ।
ବୋଲ ବୋଲ କୃଷ୍ଣ କେଶବ ମୁରାରି
ହୃଷୀକେଶ ଦୀନବନ୍ଧୁ ଦଇତାରି
ନୃସିଂହ ବାମନ ଶଙ୍ଖଚକ୍ରଧାରୀ
ବଳିଧ୍ୱଂସୀ ରାମ ଘନଶ୍ୟାମ ।୧।
ବୋଲ ବାରମ୍ବାର ମାଧବ ମୁକୁନ୍ଦ
କେଶବ ଅଚ୍ୟୁତ ଶ୍ରୀସଚ୍ଚିଦାନନ୍ଦ

ଶ୍ରୀଗୋପୀଜନବଲ୍ଲଭ ଆଦିକନ୍ଦ
ବୈକୁଣ୍ଠ ଶ୍ରୀପତି ଅଭିରାମ ।୨।
ନିତ୍ୟ ନିରଞ୍ଜନ ସତ୍ୟ ସନାତନ
ଗୋବର୍ଦ୍ଧନ ଧାରୀ ଶ୍ରୀ ନନ୍ଦନନ୍ଦନ
କାଳୀୟଗଞ୍ଜନ ଯାମଳାଭଞ୍ଜନ
ବୃନ୍ଦାବନଚନ୍ଦ୍ର କୋଟିକାମ ।୩।
ରସରାଜ ରସମୟ ରସିକେନ୍ଦ୍ର
ଗୋକୁଳକୁଳ କୁମୁଦ ପୂର୍ଣ୍ଣଚନ୍ଦ୍ର
ଦ୍ୱିଜ ଗୌରମତ୍ତ ଭ୍ରମତ୍ତ ମିଳନ୍ଦ
ଯୁଗଳପଦେ ପୂର୍ଣ୍ଣ କରୁ କାମ ।୪।

---

[ସତଷଠି]

## ଶ୍ରୀଗୌରାଙ୍ଗ ଭଜନ

ଭଜ ରେ ପାଗଳ ମନ! ଗୌରାଙ୍ଗ ମୁରତିକି
ପତିତପାବନ ଯା ନାମରେ । ଘୋଷା ।
ଶୁକ ସନକ ଆଦି ଯେଉଁ ନାମକୁ ଭଜି
ଲଭିଲେ ବଇକୁଣ୍ଠ ଧାମ ରେ ।୧।
ଧନ୍ୟ ସେ ପୁରନ୍ଦର ଶଚୀ ଦେବୀ ଉଦର
ଧନ୍ୟ ସେ ନବଦ୍ୱୀପ ଗ୍ରାମ ରେ ।୨।
ଧନ୍ୟ ସେ ନରନାରୀ କି ତପ ଥିଲେ କରି
ଲଭିଲେ ଗୌରଭକ୍ତି ପ୍ରେମ ରେ । ୩ ।
ସେ ଗୌର ପଦ୍ମପାଦେ ମଜ୍ଜ ମଜ୍ଜ ଆନନ୍ଦେ
ପୂର୍ଣ୍ଣ ହେବ ତୋ ମନସ୍କାମ ରେ । ୪ ।

ଜପି ତୁ ମାଳା ଝୁଲି ସାତ୍ତ୍ୱିକେ ଉଠ ଫୁଲି
ସୁଖ ଲଭବୁ ପ୍ରଭୁ ଯାମ ରେ । ୫ ।
ଗୌରଦ୍ୱିଜ କହଇ ଯମ ଯାତନା ନାହିଁ
ଚିନ୍ତ ରେ ଗୌର ଗୁଣ ଧାମ ରେ । ୬ ।

---

[ଅଠଷଠି]

## ଶ୍ରୀକୃଷ୍ଣ ଜନ୍ମ

ନନ୍ଦଘରେ ଆନନ୍ଦ । ଆଜ ଚେ ନନ୍ଦ ଘରେ ଆନନ୍ଦ ।
ରାଣୀ ଯଶୋମତୀ କୋଳେ ନୀଳମଣିଚନ୍ଦ । ଘୋଷା ।
ଭାଦ୍ର କୃଷ୍ଣାଷ୍ଟମୀ ତିଥି ନକ୍ଷତ୍ର ରୋହିଣୀ
ଜନମ ବ୍ରହ୍ମାଣ୍ଡନାଥ ଶୁଭବେଳା ଜାଣି । ୧ ।
ବସୁଦେବ ଥୋଇଗଲେ କନ୍ୟା ବଦଳାଇ
ଏ ରହସ୍ୟ ବ୍ରଜବାସୀ ନ ଜାଣନ୍ତି କେହି ।୨।
ପୁତ୍ର ଜନ୍ମ ମହୋତ୍ସବେ ନନ୍ଦ ନାଚେ ଭଲି
ଜୟ ଜୟ ହରିଧ୍ୱନି ବରଜ ମଣ୍ଡଳୀ । ୩ ।
ବାଜଇ ଶଙ୍ଖ ମହୁରୀ ଶିଙ୍ଗା ଭେରୀ ତୂରୀ
ମନ୍ଦିରା ମର୍ଦ୍ଦଳ ବାଜେ ଆନନ୍ଦ ସବୁରି ।୪।
ଉପନନ୍ଦ ଅଭିନନ୍ଦ ସୁନନ୍ଦ ସହିତେ
ନାଚନ୍ତି ସର୍ବ ଗୋପାଳେ ଗଉଡ଼ିଆ ଗୀତେ ।୫।
ହାତେ କେନ୍ଦୁବାଡ଼ି କାନ୍ଧେ ଶୋହେ ଦୁଗ୍ଧ ଭାର
ଖେଳନ୍ତି ଲଉଡ଼ିଖେଳ ବଡ଼ ଚମତ୍କାର ।୬।
ବାଳ ବୃଦ୍ଧ ଯୁବା ଗୋପ ଗୋପୀଏ ସକଳେ
ନାଚନ୍ତି ଗୋରସ ମାଥେ ରଙ୍ଗ ଦଳେ ଦଳେ ।୭।

ଅପୂର୍ବ ନନ୍ଦ ଉତ୍ସବଆନନ୍ଦ ବିଧାନ
ଗୌର ଦ୍ୱିଜ ମହାନନ୍ଦେ ନାଚ କରେ ଗାନ ।୮।

---

[ଅଣସ୍ତର]

## ଗୋପୀଙ୍କ ବାଳକୃଷ୍ଣଦର୍ଶନ

ସଖି ! ଆସ ଯିବା ଦେଖି
ନନ୍ଦପୁରେ ନୀଳ ମାଧବଙ୍କୁ ଦେଖି ସୁଫଳ କରିବା ଆଖି । ଘୋଷା ।
କେ ବୋଲେ ସଙ୍ଗାତ ! ଅଛି ବିପରୀତ
ବଚନ ତୁମେ ତ କହ
ସାତଶ ପଞ୍ଚାଶ ବରଷରେ ନନ୍ଦ
ରଜା ପାଇଛନ୍ତି ପୁଅ ।୧।
କରେ ଅର୍ଘ୍ୟଥାଳି ଘେନି ଗୋପବାଳୀ
ନନ୍ଦ ମନ୍ଦିରକୁ ଚଳି
କାଳିଆ କାହ୍ନୁଙ୍କୁ ବନ୍ଦାପନା କରି
ଉଚ୍ଚେ ଦେଲେ ହୁଳହୁଳି ।୨।
କେ ବୋଲଇ ଦେଖି ଅମିତମୟୂଖ
କାନ୍ତି ଆଜ ଏ କି ସୁଖି
ଇନ୍ଦ୍ରଧନୁ ଜିଣି ଭ୍ରୂଲତାର ଠାଣି
କି ସୁନ୍ଦର ଚନ୍ଦ୍ର ମୁଖ ।୩।
କେ ବୋଲଇ କରିକରଶୁଣ୍ଡ ଜିଣି
ଆଜାନୁଲମ୍ବିତ ବାହୁ
ଗୁହିଁଦେଲେ ଆଖି ରହୁଅଛି ଲାଗି
ମୂରୁଛି ନୁହଇ ଆଉ । ୪ ।

ଶାର୍ଦ୍ଦୂଳ ସ୍ଫୁଟକ ମାନୁଛି କଆଡ
ସରୁକଣ୍ଠୀ ମୃଗରାଜ
ଚରଣ ରଙ୍ଗକୁ ତରଣ ଅରୁଣ
ଶରଣ ଗଲା କ ଆଜ ।୫।
ଶୁଣ ଶୁଣ ପ୍ରାଣ ସଖି ! ଗୋ କଥାଏ
ମୋର ଶୁଣ ପ୍ରାଣସଖି !
ଗୋପ ନବବାଳୀ ଯେତେକ ଅଛନ୍ତି
ସବୁର ସଂଖାଳ ଏହି ।୬।
କେ ବୋଲେଇ ଟାମା ସଂସାର ଉପମା
ଏଠାକୁ ସୁଷମା ନାହିଁ
ଗୌର ଦ୍ୱିଜ ଭଣି ଶୁଣିଥା ମିତଣି !
ତାହାକୁ ଉପମା ସେହି ।୭।

---

[ସବୁର]

## ନନ୍ଦକୋଳେ ଶ୍ରୀ ଗୋବନ୍ଦ

(ରାଗ ଶଙ୍କର ଭରଣ— ତାଳ ଆଠତାଳୀ )

ନନ୍ଦକୋଳେ ଶ୍ରୀ ଗୋବନ୍ଦ
ବାଜେ ଶଂଖ ଭେରୀ ତୂରୀ ଭୁବନ ଆନନ୍ଦ ।ଘୋଷା ।
ନୀଳ ନଳନ ଲପନ ଶୋଭା ସୁସମ୍ପଦ
ଗୋପୀ ଗୋପାଳଙ୍କ ସୁଖ ପୂନଅଁର ଚୃନ୍ଦ ।୧।
ଯଶୋଦା ଅଞ୍ଚଳନଧି ଶ୍ରୀ ବାଳମୁକୁନ୍ଦ
ଲାବଣ୍ୟ ଚରଣ ତଳ ରକ୍ତ ଅରବନ୍ଦ ।୨।

ବଙ୍କିମା ଗୃହାଣୀ କ ସେ ହାସ ମନ୍ଦ ମନ୍ଦ
ସଂସାର ସାର ସୁଷମା ଶ୍ରୀପରମାନନ୍ଦ ।୩।
ପାନ କରିବାକୁ ସେ ପଦାବ୍ଜ ମକରନ୍ଦ
ଗୌର ଚରଣ ଦ୍ୱିଜର ମାନସ ମିଳିନ୍ଦ ।୪।

---

[ଏକତ୍ରର]

## ଯଶୋଦା ସୌଭାଗ୍ୟ

[ଲୋ ସଜନୀ କ ଦେଖିଲି ଆଜ ନେତ୍ର —ବୃତ୍ତ]

ଗୋ ଯଶୋଦେ ! କ ତପେ ପାଇଛ ସୁତ
କେଉଁ ବ୍ରତେ କେଉଁ ଦେଅ ମନାଇଁଲ ଧନ୍ୟ ମା ! ତୁମ୍ଭ ସୁକୃତ । ଘୋଷା ।
ଗୋକୁଳ କୁଳ କୁମୁଦ କଳାକର ବଦଗନ୍ଧ ବର ଅଚ୍ୟୁତ
ଉଇଁଲ ଦନୁଁଏ ବରଜ-ଅମ୍ବରେ ବର୍ଷନ୍ତି ସୁଖଅମୃତ ।୧।
ଧନ ଜନ ସିଦ୍ଧି ଗୋପଲକ୍ଷ୍ମୀ ନିଧି ସବୁ ଯେ ହୁଏ ବର୍ଦ୍ଧିତ
ଯାହାକୁ ତ ଯେତେ ପ୍ରାପତ ହୁଅଇ ଅଧାମ ଲବଣୀ ଘୃତ ।୨।
ଶ୍ୱଶୁର ବଂଶୀପାଣି ନିଜ ଭିଜି ମାଠାଣି ସର୍ବଗୁଣେ ଅଲଙ୍କୃତ
ଅଲଭ୍ୟ ରତନ କଳାମାଣିକ ଟି ଅବିନାଶୀ ଅପ୍ରାକୃତ ।୩।
ଗଛୁଛନ୍ତି ଦେବୀ ପୂର୍ଣ୍ଣମାସୀ ଭାବ ବୃଷଭାନୁ ଜେମାଙ୍କୁ ତ
ଗୌରଦ୍ୱିଜ କହି ଆସ୍ୱାଦୁଥିବାହିଁ ରାଧାକୃଷ୍ଣ ନାମାମୃତ ।୪।

---

(ବାସ୍ତବ)

## ଯଶୋଦା ଭାଗ୍ୟବତୀ

(ରାଗ ତମାଳ ତାଳ ଝୁଲଝୁମ୍ପା)

ବଡ଼ ଭାଗ୍ୟବତୀ ଗୋ ନନ୍ଦରାଣୀ ଯଶୋଦେ
କେତେ କାଳେ ଯାହା କୁମର ପାଇଛ
କେଉଁ ପୁଣ୍ୟବଳେ ଗୋକୁଳେ ହାଦେ । ଘୋଷା ।
କେତେ ଯୁଗ ବସି ବିରଞ୍ଚି କେଉଁ ଛନ୍ଦେ ଥିଲ ଗୋ ରଚି
ଇନ୍ଦ୍ର ନୀଳମଣି ଲାବଣ୍ୟ ପ୍ରତିମା
ତୁମ୍ଭର ପାଇଁକି ମନସ୍ୱଚ୍ଛନ୍ଦେ ।୧।
କେହୁ ବୋଲେ କଳା ମାଣିକ ରତନକୁ କେଉଁ ବଣିକ
କେବଣ କୁନ୍ଦେ ରସାଣି ଗଢ଼ିଥିଲା
ନିରୂପମ ଶିଶୁଶୋଭାସମ୍ପଦେ ।୨।
କେ ବୋଲେ ଏ କାଳିଆଗୃନ୍ଦ ଗୋପଗୋପୀ ମୋହନ ଫାନ୍ଦ
କୋଟି ପରମାୟୁ ଦେଇ ବଞ୍ଚିଥାଉ
ସର୍ବେ ହୁଳହୁଳି ଦିଅ ଆନନ୍ଦେ ।୩।
ଦ୍ୱିଜ ଗୌର ଚରଣ ଭଣି ଶୁଣ ଆଗୋ ବ୍ରଜରମଣି
ଏ କାଳିଆ ହାତ ସବୁର ଗୋ ଥାଉ
କୃତାର୍ଥ ହୋଇବା ଲାଗି ହୃଦେ ।୪।

———

[ଚେଶ୍ବର]

## ଜନ୍ମୋତ୍ସବ

ବଡ଼ ଆନନ୍ଦ ରେ ଆଜ ଲଗିଛୁ ଗୋପର ଦାଣ୍ଡେ
ନାନା କୁତୁହଳେ ନାଚନ୍ତି ଗୋପାଳେ
ହରି ହରି ବୋଲି ତୁଣ୍ଡେ । ଘୋଷା ।
ରୂପକ ମନ୍ଦରା ତାଳ ବାଜେ ଘନ ଘନ
ସେ ତାଳ ବାଜେ ଘନ ଘନ
କଟୀରେ କଙ୍କିଣି ବାଜେ କଣିକଣି
ସୁବଳସ୍ଥ ଝଣଝଣ ।୧।
କେ ହସ୍ତକ କରଇ କେ କରଇ ଉକୁଟ
ସେ କରଇ ଉକୁଟ
ଝାଁଝାଁ ଝନକୃତ ଥୈଗତେ ତାଥେଇ
ତାକତା ଥେଇ ଦ୍ରିମିକିଟ ।୨।
କେ ଆଳାପ କରେ ସାସା ସାରଗମ ପଦ
ସେ ସାରଗମ ପଦ
ମଙ୍ଗଳ ଗୁନ୍ଧରୀ ରାଗରେ ମଦ୍ଦରୀ
ସୁସ୍ବରେ କରଇ ନାଦ ।୩।
କେ ଉର୍ଦ୍ଧକୁ ହସ୍ତ ଟେକ ଗାନ କରେ ଉଚ୍ଚେ
ସେ ଗାନ କରେ ଉଚ୍ଚେ
କେବଣ ଗଉଡ଼ ବୁଢ଼ା ମହାଖୁଡ଼
ନଇଁ ନଇଁ କରି ନାଚେ ।୪।
କେ ଗାଏ ଗଉଡ଼ ଗୀତ କରଣ ତମାଳ ସେ
କରଣ ତମାଳ

ଗୋବନ୍ଦକୁ କାନ୍ଧେ ବସାଇ ଆନନ୍ଦେ
ନନ୍ଦ ନାଚେ ଛଳ ଛଳ ।୫।
କାମସେଣ ସୁସେଣ ଆବର ଚନ୍ଦ୍ରସେଣ
ସେ ଆବର ଚନ୍ଦ୍ରସେଣ
ବାହୁ ଦୋହଲାଇ ନାଚନ୍ତ ଗେଲାଇ
କଣ ଲୋକ ହରଷଣ ।୬।
ଗଗନେ ଦେବନ୍ତ ଦେବେ କଣ ଏକ ଦୃଷ୍ଟି
ସେ କଣ ଏକ ଦୃଷ୍ଟି
ବୋଲେ ଗୌର ଦ୍ୱିଜ ବ୍ରଜପୁରେ ଆଜ
ହରି ନାମ ନୃତ ବୃଷ୍ଟି ।୭।

---

[ଚଉପଦ]

## ଆନନ୍ଦ ହାଟ

(ରାଗ ଆନନ୍ଦ ମଞ୍ଜରୀ)

ଭଲ ଭାବ ଲାଗିଛୁ ଖଣ୍ଡେ ।

କେ ବସି ଦେଖନ୍ତ ଉଚଳଗଣାରେ କେ ଆସି ଦେଖଇ ଦାଣ୍ଡେ ।ଘୋଷା।
ଆନନ୍ଦେ ଗୋପାଳେ ନନ୍ଦ ସିଂହଦ୍ୱାରେ ଠୂଳ
କାହାର ମୁଣ୍ଡରେ ରଙ୍ଗ ଚଉତନା କାମୁଣ୍ଡେ ମୟୂରଚୂଳ ।୧।
କାହା ଶିରେ ଗୁଞ୍ଜାର ମୁଣ୍ଡ ଥୋପି ଥୋପି
କାହାର ମୁଣ୍ଡକୁ ସୁନ୍ଦର ଦିଶଇ ବାଙ୍କ ବଉଦଆ ଟୋପି ।୨।
କାହା କର୍ଣ୍ଣେ କୁଣ୍ଡଳ କା କର୍ଣ୍ଣେ ଫିରିଫିରା
କେହୁ ବାହୁମୂଳେ ବାହୁଟି ବାନ୍ଧଣ ମାରୁଅଛୁ ଆଡ଼ଚିରା ।୩।

କେ ଗଳାରେ ଲମ୍ବାଇଛି ଶ୍ୱେତ ଗୁଞ୍ଜମାଳି
କେବଣ ଗୋପାଳ ଗାଲଛୁର ବାଇ ନାଚଇ ନୟନ ଢାଳି ।୪।
କେ ପିନ୍ଧି ଝଲଣା କାଛୁ ଭିଡିଅଛି ଜଙ୍ଘେ
କାହାର ଅଙ୍ଗକୁ ଘଟଣା ହୋଇଛି ଭଦଂରଷି ଜରଅଙ୍ଗେ ।୫।
କେହୁ ଡେଲିଁ ଆଡେ ରହି ଧଏ ଝାଙ୍ଗ ଢାଳି
ଝୁଣ୍ଟୁଝୁଣ୍ଟୁ ଘଣ୍ଟି ଘାଗୁଡ଼ି ବାଜଇ ଶିଙ୍ଗା ବେଣୁ କରତାଳ ।୬।
କେ କାହାକୁ ଡାକେ ଭାଇ ଜଗିଥା ତୋ ଦେହ
ବହୁତ ଜନକେ ହାବୁଡ଼େ ପଡ଼ିଛୁ କାହିଁ ଯିବୁ ରହ ରହ ।୭।
ଲଉଡ଼ି ଖେଳରେ ରମ୍ଯି ହେଲେ ଯୋଡ଼ଯୋଡ଼
ପାଇ ଠକି ଠୁକୁ ଶବଦ ଶୁଭଇ ବାଜଣ ବାଡ଼ିକ ବାଡ଼ ।୮।
ନାନା ହାସ ରସ କଉତୁକ ଭଙ୍ଗୀ ନାଟ
ଅତି ସମ୍ଭ୍ରମରେ ନନ୍ଦର ଦୁଆରେ ବସିଛି ଆନନ୍ଦ ହାଟ ।୯।
ନନ୍ଦର ଦାଣ୍ଡରେ କେ କୁଙ୍କୁମ ନେଇ ଘଷି
ଶୁକ୍ଳ କେଶରେ ହଳଦୀ ଲଗାଣ ସୁନାଗୁଣା ପ୍ରାଏ ଦିଶି ।୧୦।
ଗୋପାଳଙ୍କ ମଧ୍ୟେ ନନ୍ଦ ନାଚେ ତଳି ଢଳି
ପୁରୁଷମାନଙ୍କ ହରି ଶବଦକୁ ନାରୀଙ୍କର ହୁଳହୁଳି ।୧୧।
ଗୌର ଦ୍ୱିଜ ମନ ଅତି ଆନନ୍ଦରେ ଧାଇଁ
ଅନେକ ଜନକୁ ଆଶା କରିଅଛି ସେ ନାଟ ଦେଖିବା ପାଇଁ ।୧୨।

———

[ପଞ୍ଚସ୍ୱର]

## ନୀଳ ହାତୀ

ହାତୀ ଝୁଲଇ ରେ ଦିଶଇ କେଡ଼େ ସୁନ୍ଦର
ଅପୂରୁବ ହାତୀ କାହୁଁ ଆସିଅଛି
କବା ଏ ନୀଳ ମନ୍ଦର । ଘୋଷା ।
ଦେଖ ଦେଖ ସଖି ବଡ଼ଭଙ୍ଗି ଆଖି
ସୁହାଣି ବିଷମ ଛଟା
ମତ୍ତ କରିବର ହେଲା କାଳେ ଆଉ
ନ କରିବ କେଉଁ ହଟା ।୧।
କେମନ୍ତ ସୁନ୍ଦର ବେନି ରଦ ତାର
ଅଙ୍କୁରି ଆସୁଛି ସହି !
ନାସି ଗଣ୍ଡ ସ୍ଥଳେ ଭେଦିବ ଏ କାଳେ
ଏଥିରେ ସଂଶୟ ନାହିଁ ।୨।
ଗଜ କପାଳକୁ ସୁନ୍ଦର ଦିଶଇ
ଚନ୍ଦ୍ର ବିନ୍ଦୁ ଅାଙ୍କିକରି
ସୁନ୍ଦରୀଙ୍କ ଭାଲ ସିନ୍ଦୂର ଲାଗିଲେ
କାଳେ ନୋହିବ କି ଚୋରି ।୩।
ଏ ନୀଳ ବାରଣ ରଣକୁ ବରଣ
ହେଲାକାଳେ ଆଗ ବଢ଼ି
ସମ୍ବର ଅରିର ସମରରେ ହାରି
ଯିବ ଧନୁଶର ଛାଡ଼ି ।୪।
କେ ବୋଲେ ଏ ହାତୀ ମଥୁରାରେ ଥିଲା
କଂସ ରାଜା ବନ୍ଧଘରେ

ଶାଙ୍କୁଳୀ ଛୁଣ୍ଡାଇ ପଳାଇ ଆସିଣ
ରହିଛି ଗୋପନଗରେ ।୫।
କେ ବୋଲେ ଏ ହାଣ୍ଡି କେଉଁଠାରେ ଥିଲା
ଗୋପକୁ ଆଣିଲା କେହୁ
ନାନା ଖଦା ନାନା ବୋଲଣା କରିବ
କେ ସହିବ ଏହା ଦାଉ ।୬।
କେ ବୋଲେ ରଜାର ଅନେକ ଡଗର
ଆସିଥିଲେ ଜଣେ ଜଣେ
ଦୁରୁଦଣ୍ଡ ହାଣ୍ଡି ଧରା ନ ପଡ଼ିଣ
ସଭିଙ୍କି ମାଇଲା ପ୍ରାଣେ ।୭।
କେ ବୋଲେ କାଳିଆ ହାଣ୍ଡିଟି ମେଳିଆ
ନ ମାନଇ ଖାଲ ଝମା
ଗୋପପୁର ଦହି ଦୁଧସର ଖାଇ
ହୋଇଛି ଧୁସୁରୁଧୁମା ।୮।
କେ ବୋଲେ ଗୋକୁଳ ପଦୁମା ବନକୁ
ଉଜାଡ଼ିବ ଏହୁ କାଳେ
ଏ ହାଣ୍ଡିକି ନେଇ ବାନ୍ଧି ରଖିଥିବା
କେଳିକଦମ୍ବର ମୂଳେ ।୯।
କେ ବୋଲେ ଏ ହାଣ୍ଡି କହ୍ନେ କେ ବସିବ
କାହାର ଏଡ଼େକ ଭାଗ୍ୟ
ଗୌର ଦ୍ୱିଜ ବୋଲେ ରାସ ମଣ୍ଡଳରେ
ବୃନ୍ଦାବନ୍ତି ହେବେ ଯୋଗ୍ୟ ।୧୦।

———

[ଛପ୍ପର]

## ନନ୍ଦରଜାର ଟିକି ପିଲାଟି

ବଡ଼ ହରଷ ଜଣେ ଲୋ ନନ୍ଦ ରଜାର ଟିକି ପିଲାଟି
ଟିକି ପିଲା ବୋଲି ଯାହାକୁ ବୋଲନ୍ତି
ଚିର ପକାଇଲା ବକାର ପାଟି ।ଘୋଷା
ଜନମ କାଳେ ଏନ୍ଥୁରଶାଳେ
ପୂତନା ଅସୁରୀ ଧଇଲା କୋଳେ
ଜାନୁରେ ବସାଇ ସ୍ତନ ଦେଲାବେଳେ
କ୍ଷୀର ସଙ୍ଗେ ପ୍ରାଣ ଶୋଷି ନେଲା ଟି ।୧।
ଧାଇଁଲା ଦାଣ୍ଡେ ଗୋରସ ଭୁଣ୍ଡେ
ହାତ ବୋଳିଦେଲା ଗୋପୀଙ୍କ ମୁଣ୍ଡେ
ଧୂଳି ଖେଳ ଠାରେ ମିଳଣ ଗୃଣ୍ଡେ
ଅନ୍ଧକୁ ନୟନ ଯାଚ ଦେଲାଟି ।୨।
ପାତିଲା କର ମାଗିଲା ସର
ଆଣି ଦେଲାକଣି ଥରକୁ ଥର
ଦହି ଦୁଧ ଛେନା ଶତେକ ଘର
ହଣି ! ତା କରକୁ ନ ଅଣ୍ଟିଲା ଟି ।୩।
ଗିଳି ଅନଳ ଭଷିଲା ତାଳ
ବନେ ଧେନୁକାର ପୂରିଲା କାଳ
କାଳନ୍ଦୀ ଜଳରୁ ବିଷ ଉଡ଼ାଇ ସେ
ପଦୁ ତୋଳି କାଳୀ ଦଳି ଦେଲା ଟି ।୪।
ଭଷଲା ˙ମାଟି ଗୁଟିକେ ପିଟି
ଯଶୋଦା ଆସିଣ ଦେଖନ୍ତେ ପାଟି

ଉଦର ଭିତରେ ସମସ୍ତ ବ୍ରହ୍ମାଣ୍ଡ
ମାତାଙ୍କୁ ସେଠାରେ ମାୟା କଲ ଟି ।୫।
ଏଡ଼ିକ ଭଲ ସେ ଟିକି ପିଲ
କେ ଜାଣେ ଗୋ କେଉଁ ରାଇଜେ ଥିଲ
ଗଉର ଚରଣ ବୋଲେ କଂସ ଆଳେ
ବନ୍ଦଶାଳା ଠାରେ ଜନ୍ମ ହେଲ ଟି ।୬।

---

[ସତସ୍ତର]

## କୋକଭୟେ ଯଶୋଦା ବିଳାପ

(ରାଗ—ଶୋକ ମଞ୍ଜରୀ)

ଜୀବଧନରେ ! ଆହା ମୋ ନବୀନ ଘନ !
କାହିଁ ହରାଇଲି କେହୁ ନେଲା ମୋର ରଙ୍କରତନ । ଘୋଷା ।
ନାରୀକୁଳେ ଜନ୍ମ ହୋଇ ସଂସାରେ ନ ଥିବେ କେହି
ମୋହପରି କର୍ମହୀନ ।୧।
ଗୃହିବି କାହା ମୁଖକୁ ଦେଲୁ ଦାରୁଣ ଦୁଃଖକୁ
ହେଲା ଦଶ ଦିଗ ଶୂନ୍ୟ ।୨।
କେଡ଼େ ଦାରୁଣ ବିଧାତା ଏଡ଼େ କୁରୂତର ଚିନ୍ତା
କଲା ମୋ କର୍ମେ ଲେଖନ ।୩।
ଜାଣି ତୋତେ ହରାଇଲି କୋକ ବୋଲି ଡରାଇଲି
ସେ ହେଲା କାଳ ବଚନ ।୪।
ଆହା ମୋ ଲବଣୀନିଧି ! କରିବ ଏବେ କି ବୁଦ୍ଧି
ବାରେ ଦେଖା ତୋ ବଦନ ।୫।

କାହିଁ ଲୁଚ ଅଛୁ ଆସ ବାବୁ ! ମୋ କୋଳରେ ବସ
କରାଇବ କ୍ଷୀରପାନ ।୬।
ତୋ ଗୁଣମାନ ସୁମର କାନ୍ଦିବାପାଇଁ ଆତୁର
ଅଛି ଏ ପାପ ଜୀବନ ।୭।
ଗଉର ଚରଣ ଭଣି କୃଷ୍ଣନାମ ଧର ରାଣୀ
କଲେ ଅନେକ ରୋଦନ ।୮।

---

[ଅଠସ୍ତର]

## ଅଜଟ କୃଷ୍ଣ

ବାବୁ ବନମାଳ ରେ ! ମୋତେ ନ କର ଅଳ
ପଛେ ତୋତେ କୋଳେ ଧରି କ୍ଷୀର ଦେବ
ଦଣ୍ଡେ ମଠ କର ଦୁଃଖିସଙ୍ଖାଳି । ଘୋଷା ।
ଏହିକ୍ଷଣି ଦଧି ମନ୍ଥି ସାରିବ
ନିଶ୍ଚିନ୍ତରେ ତୋତେ କୋଳେ ଧରିବ । ୧ ।
ଆରେ ଜୀବଧନ ! ନୁହ ଦୁର୍ଦ୍ଦଣ୍ଡ
ଭୁଞ୍ଜାଇବ ସର ଶାକର ଖଣ୍ଡ । ୨ ।
ଡାକୁଛନ୍ତି ସଙ୍ଗି ବାଳକ ଗଣେ
ଖେଳୁଥାଅ ବାବୁ ପୁରପ୍ରାଙ୍ଗଣେ । ୩ ।
ଭାଇ ବଳରାମ ନୁହଇ କଛି
ସୁବୁଧି ପଣ ମୋ କାହ୍ନୁର ଅଛି । ୪ ।
ଭୋଳା ପିଲା ମୋ କଳା କହ୍ନାଇ
ଚନ୍ଦ୍ରମୁଖକୁ ପରମୁଣ୍ଡା ଯାଇ । ୫ ।

ମାତାଙ୍କ ବଚନ କର୍ଣ୍ଣେ ନ ଶୁଣି
ଖିଆକୁ ଧଇଲେ ମୁରଲୀପାଣି । ୬ ।
ହସ୍ତ ଘୃଳ ଆଉ ନ ପାରେ ରାଣୀ
ଏ ରସରେ ଦ୍ୱିଜ ଗଉର ଭଣି । ୭ ।

---

[ଅଣାଅଶି]

## ଦୁର୍ଦ୍ଦଣ୍ଡ କୃଷ୍ଣ

(ରାଗ ଲଳିତ ମଞ୍ଜରୀ)

ଧଇଲୁ ତ ଖିଆଦଣ୍ଡ । ହୋଇଲୁ ତ କାହ୍ନୁ ଏତେ ଦୁର୍ଦ୍ଦଣ୍ଡ
ଶ୍ରୀବଧନ ରେ ! ଯାଅ ଏଥି ହୋ ନା ଲଣ୍ଡଭଣ୍ଡ । ୧ ।
ଯେବେ ଦଧି ନ ମନ୍ଥିବ । କଂସରଜା କର କେସନେ ଦେବ ।
ଶ୍ରୀବଧନରେ ! ମୁଁ ତ ସଂସାରୁ ଉଛନ୍ନ ହେବ । ୨ ।
ଛାଡ଼ ମୁଁ ମନ୍ଥଇ ଦଧି । ମୋ ଦଧିବାଦନ ଅଞ୍ଚଳନିଧି ।
ଶ୍ରୀବଧନ ରେ ! ନୁହ ଉଚ୍ଛିଟିଆ ବାଇବୁଧି । ୩ ।
ନମାନୁ କାହିଁକି କଥା । ଯାଇ ଶେଯେ ଆଜ୍ଞ ଟିକେ ଶୋଇଥା ।
ଶ୍ରୀବଧନ ରେ ! ଆଉ ଦିଅ ନା ମୋ ମନେ ବ୍ୟଥା । ୪ ।
ନ ବୁଝନ୍ତେ ଶ୍ୟାମମଣି । କାଖରେ ସେ ଷଣି ଧଇଲେ ରାଣୀ ।
ଏହା କାଳେ ଯେ । ଚୌରଦ୍ୱିଜ ରସ ଭଣି । ୫ ।

---

[ଅଣ୍ଡି]

## ଅବୁଝା କାହ୍ନୁ

ଶ୍ୟାମ ସୁନ୍ଦର ରେ ! କହୁଛି ମୋ ବୋଲ ଘେନ
ଏତେବେଳେ ପରା ମୋତେ ଜଞ୍ଜାଳ ଲାଗିଛି ଧନ ! ।୧।
ଶୀତଳ ବେଳରେ ଯେବେ ନୋହିବ ଦଧି ମନ୍ଥନ
ଖରା ଲାଗିଲେ ପରା ଲବଣୀ ହୋଇବ ଲୀନ । ୨ ।
ଏ ଗୋପପୁରେ ବାଳକେ ବଡ଼ ଅବୁଝ ଦୁର୍ଜ୍ଜନ
ସୁବୁଦ୍ଧିସୁନା ମୋ କାହ୍ନୁ ସମସ୍ତେ ବୋଲନ୍ତି ଧନ୍ୟ । ୨ ।
ଗ୍ଲାନ୍ତି ତ ନାହିଁ ଦୃଶିତ ଜୃମ୍ଭା ଆସେ ଘନ ଘନ
ଦୃଢିତ ଦଶୁଛି ତୋର ମଳ ନଳିନ ନୟନ । ୩ ।
ଦେଖୁଅଛୁ ପରା ଉଠିନାହିଁ ଧବଳବଦନେ
ଚଳଙ୍କରେ ଯାଇ ସଙ୍ଗେ କଣ ଥା ଦଣ୍ଡେ ଶୟନ । ୪ ।
ଯେତେ ବୁଝାଇଲେ ନ ବୁଝିଲେ ପଙ୍କଜ ବଦନ
ମାତାଙ୍କ ଚଣନ୍ତ ଧରି କରନ୍ତି ହରି ରୋଦନ । ୫ ।
ଗୌର ଦ୍ୱିଜ କହେ ମାଏ ମୋ ହାନ ବଚନ ମାନ
ଆଗ ଖିର ଦେଇ ପଛେ କରୁ ଥା ଦଧି ମନ୍ଥନ । ୬ ।

---

[ଏକାଅଣ୍ଡି]

## ନଟକୃଷ୍ଣ

[ନ ଚେଜିବ ମୁରଲୀ ଧରା ବୃତ୍ତେ]

କି ସୁନ୍ଦର କଳା କହ୍ନାଇଁ
କେ ଦେଲା ତାକୁ ଏ ବେଶ ବନାଇଁ । ଘୋଷା ।

ଝୁଲି ଝୁଲି ନାଚେ   ଖେମଟା ତାଳରେ,
କ ରଙ୍ଗେ ବାଙ୍କେ ଅନାଇଁ ଅନାଇଁ
ନୂଆ ଗୁଆଳୁଣୀ   ଛୁଆ ଭୁଆଷୁଣୀ-
ମାନଙ୍କ ମାନସ ନଏ ମନାଇଁ । ୧ ।
କଏ ଡାକୁଥାଇ   ଅନାଇଁ ବନାଇଁ,
କେହୁ ଡାକେ ଗେଲେ ସନାଇଁ ଦନାଇଁ
ନନ୍ଦ ରାଣୀଙ୍କର   ସେରନ୍ତା ପୁଅକୁ
ଢେ କେତେ ଚମୋଳି ମେଲେ ଦେନାଇଁ । ୨ ।
କଏ ଯାଚୁଥାଇ   ଖଣ୍ଡ ସରପୁଲୀ
ଅଧାମ ଗୋଟିକା ଛେନା ଘନାଇଁ
କଏ ଚୁମ୍ବଦଏ   କଳାଗୁନ୍ଦ ମୁଖେ
ସେ ହଲୁଦେ   ନେନ   ଥନଥନାଇଁ । ୩ ।
ଅଞ୍ଚଳ ପତାଇ   ଜଞ୍ଜାଳିଆ କାହ୍ନୁ
ନବନୀତ   ମାଗେ   ଖନଖନାଇଁ
ଗୌରଦ୍ୱିଜ କହ   ଧନ୍ୟ ଗୋପଗୋଇ !
କେଉଁ ଦାଉଁ ଚୁବେ   ଥିଲ   ମନାଇଁ । ୪ ।

———

[ବସ୍ନାଆଶ୍ରି]

**ନାଚୁଆ କାହ୍ନୁ**

ବଡ଼ ଢଚଷ ଜଣେ ନନ୍ଦରଜାର ଟିକ ପିଲଟି
ଗୋପଗୋପୀଙ୍କର ମନକୁ ମୋହୁଛୁ
ଏ ଅଭିଲ ପିଲ କାହ୍ନି ଥିଲ ଟି । ଘୋଷା ।

କି ରଙ୍ଗରେ ଦେଖ ନାଚ କରୁଅଛୁ
କରି କି ଗୃହାଣୀ ନାସାଫୁଲ ଟି
ଏତିକ ବୟୁଁ ତ ହେଲଣି ଏସନ
ବଡ଼ ହେଲେ କି ନ କରେ ଭଲ ଟି ।୧।
ମୋ ମନେ ମଣୁଛୁ ପ୍ରତି ଘରେ ଘରେ
ଫିଟାଇବ କେତେ କବାଟ ତାଟି
ଏତିକ ବେଳୁ ତ ଦେଖାଇ ହେଲଣି
ମଦନଛଇକ ଆଖି ଠାରଟି ।୨।
ଏକ ଝପରିତ ଦେଖିଲ ଗୋ ମିତ !
ଦେଖା ଶୁଣା ବାହ୍ୟୁଁ ଯାହା କଲ ଟି
ଘରକ ଗୋରସ ଚାର କରେ ଦେଲ
କବଳକେ ଚାହା ଦେଲ ତ ଗୃଟି ।୩।
ଆଉ କେତେ କେଉଁ ଭେଳିକ କରିବ
ରହିଥା ଦେଖିବ ନ କର ପାଟି
ଗୌର ଦ୍ୱିଜ ବୋଲେ ମନେପକାଇବ
କୁଞ୍ଜବନ ନିଧୁବନ କଥା ଟି ।୪।

---

[ଝେମ୍ପାଅଗ୍ନି]

## ନାଟୁଆ କହ୍ନା

ଦେଖିବା ଆସ କହ୍ନାଇ ନାଚ ଗୋ
ନନ୍ଦଘରେ ଆଜ ଆନନ୍ଦ ହାଟ ଗୋ ।ଘୋଷା
ପାଟ କାଛୁ ପିନ୍ଧି ଯଶୋଦା ଗୃହ
କଅାଉ ଭଙ୍ଗିରେ ମାରେ କୁହାଟ ଗୋ ।୧।

ଚଉପାଶେ ରୁଣ୍ଡ ଆଭୀରୀଥାଟ
ମଧ୍ୟେ ବନମାଳୀ କାଳିଆ ଘାଟ ଗୋ ।୨।
ଦ୍ଧିଁ ତା ମୁରୁକ ହାସ ଜମାଟ
ଭଲ ନ ହେବ କା ମନ ଉଚ୍ଚାଟ ଗୋ ।୩।
ଗୌର ଦ୍ୱିଜ ଭଣି ସେ ନଟରାଟ
ଦର୍ଶନେ ଜଞ୍ଜାଳଦଉଡ଼ି କାଟ ଗୋ ।୪।

———

[ଚକ୍ରକେଳି]

## ନଟବର

ଗୋପୀ ଦେଇ କରତାଳିକ । ନଚ୍ଚାଇଲେ ପିଲ ବନମାଳୀକ
କରେ ବାଇ ତାଳ ନାଚନ୍ତ ଗୋପାଳ ଅନାଇଁ ମନାଇଁ ବ୍ରଜବାଳୀଙ୍କି
। ଘୋଷା ।
କେ କରେ ଉକୁଟ ତାନରେ
କେହୁ ରସେ ଗୀତ ଗାନରେ
ବାଜେ କଣିକଣି କଟିର କିଙ୍କିଣି
ନାଚିବାର ତାନମାନରେ ।୧।
ରାମ ନାଚୁଛନ୍ତ ବାଦରେ
କୃଷ୍ଣଙ୍କୁ ଅନାଇଁ ଆଦରେ
ବାଜେ ଝୁମୁ ଝୁମୁ ଝୁମୁକ ନୂପୁର
ରୋହଣୀନନ୍ଦନ ପାଦରେ ।୨।
ଶ୍ରୀକୃଷ୍ଣ ମୁଖକୁ ଅନାଇଁ
କେଉଁ ଗୋପୀ କହେ ଧେନାଇଁ

ସମଙ୍କର ନାହିଁ ଅଧିକ ହେଲା ତ
ତୁମ୍ଭେ କି ନାଚିଲ କହ୍ନାଇଁ ! ।୩।
ଗୋପୀମାନେ ଛଳବାଣୀକି
କହିବାରୁ ବେଣୁପାଣିଙ୍କ
ପାଦ ଛନ୍ଦ ନାହିଁ କଲେ ନନ୍ଦସୂତ
ପ୍ରକାଶି ତ୍ରିଭଙ୍ଗିଠାଣିକି ।୪।
କେ ବୋଲେ ରେ ଧନ୍ୟ କାଳିଆ !
ଭଲ ରେ କାଇଞ୍ଚମାଳିଆ
କାହିଁ ରଖିଥିଲୁ ଏ ଭଙ୍ଗିନର୍ତ୍ତନ
ଗୋପସୂତସଙ୍ଗମେଳିଆ ।୫।
ଯାହା ଶ୍ରୀଚରଣ ଧ୍ୟାନରେ
ବ୍ରହ୍ମା ଶିବ ସାବଧାନ ରେ
ସେ ପୁଣି ଗୋପରେ ନୃତ୍ୟ କରୁଛନ୍ତି
ଗୋପୀଙ୍କର ଅବଧାନରେ ।୬।
ଗୌରଚରଣ ମାନଙ୍କୁ
ନ କହିବ ଆଉ ଆନକୁ
ଆହେ ଦୀନବନ୍ଧୁ କରୁଣାନିଧାନ !
କର ଏହି ଅବଧାନକୁ ।୭।

———

[ପଞ୍ଚାଅଶି]

# ସ୍ନେହାତୁର ଯଶୋଦା

(ରାଗ ମହ୍ଲାରଚାଳ ନିପୁଣ)

ଶ୍ୟାମ ! ନ ଯା ନ ଯା ବନରେ ଶ୍ୟାମ ନ ଯା ବନ
ବାବୁ ! ତୁ ମୋ ଜୀବନଧନ ରେ । ଘୋଷା ।
ଆରେ ବାପ ବନମାଳି ! ତୁ ମୋ ନୟନପିତୁଳି
ତୋ ବହୁନେ ଏ ଭୁବନ ଶୂନ୍ୟ ରେ ।୧।
ଦଣ୍ଡେ ନ ଦେଖିଲେ ତୋତେ କୋଟି ଯୁଗ ହୁଏ ମୋତେ
ମୁହିଁ ରଙ୍କ ତୁ ମୋ ରତନ ରେ ।୨।
ଡରୁ ଅନ୍ଧାର ଘରକୁ ମାଆ ମାଆ ବୋଲି ଡାକୁ
ଭୟେ ହେଉ ତୁ ଛନ ଛନ ରେ ।୩।
କାଲି ତୋତେ କୋଳେ ଘେନି ଶୋଇଥିଲି ମୁଁ ରଜନୀ
ଦେଖିଲି ମୁଁ ପାପ ସପନ ରେ ।୪।
ଦଣ୍ଡେ ହୋଇଲେ ଡେରି ହେକେ ହେଉ ଥର ହର
ବନେ କରିବୁ କି ଭୋଜନ ରେ ।୫।
ଦ୍ୱିଜ ଗୌର କହେ ଦୁଖି ଯେବେ ଯିବୁ କଥା ରଖି
ତୋ ସଙ୍ଗେ ମୁଁ ଯିବି କାନନ ରେ ।୬।

———

[ ଛୟାଅଶି ]

## ପୁତ୍ରବତ୍ସଳା ଯଶୋଦା

ଜୀବଧନ ଘନଶ୍ୟାମ !
ନେତ୍ର ସମ୍ପତ୍ତି ମୋ କାଳିଆ ଜହ୍ନ । ନୀଳ ହୀରା ରେ
ମୋ · ହୃଦଚଉଚନ୍ଦନ । ୧ ।

କାଲଠାରୁ ଖାଇନାହୁଁ
ପ୍ରସନ୍ନ ବଦନ ଦିଶିବ କାହୁଁ । ଚିନ୍ତାମଣି ରେ
ନଣି ଘଡ଼ିକରେ ଶୋଉ । ୨ ।

ବଂଶୀ ଅବା କେଉଁ ଗରୁ
ଧଇଲେ ଏ ହାତ ସେ ହାତ କରୁ । କୃଷ୍ଣଚନ୍ଦ୍ର ରେ
ମୋ ପିଲାପୁଅ କଟି ସରୁ । ୩ ।

ପୋଏ ଧରିଥାନ୍ତୁ ଗିରି
ବସ ମୋ କୋଳରେ ଭୋଜନ କରି । ବେଣୁପାଣି ରେ
ପଗିଣ ଯାଉଛୁ ଥରି । ୪ ।

ଜନନୀ ବାତ୍ସଲ୍ୟ ବାଣୀ
ଶୁଣି ହସହସ ମୁରଲୀପାଣି । ସେ ନୀଳମଣି
ପଦାବ୍ଜେ ଗଉର ଭଣି । ୫ ।

———

[ ସତାଅଣି ]

## ସୁତବତ୍ସଳା ଯଶୋଦା

(ରାଗ ଲଳିତ କାମୋଦୀ ତାଳ ଆଠତାଳି)

ରେ ଜୀବଧନ ! କାହିଁକି ତୁ ରଖିବୁ ଗୋଧନ ରେ । ଘୋଷା ।
କେଉଁ ଦ୍ରବ୍ୟ ଅପୂର୍ବ କି ନମିଳଇ ମୋତେ ରେ
ବତ୍ସ ରଖିବାକୁ ବନେ ପଠାଇବ ତୋତେ ରେ । ୧ ।
ଲକ୍ଷେ ଲକ୍ଷେ ରତ୍ନୁଅଳ ଅଛନ୍ତି ମୋହର
ଘୃତ ବରତନ ଖାଇ ହୋଇଣ ଗୃକର ରେ । ୨ ।
ବନେ ବୁଲି ବତ୍ସ ଚରାଇବା ବଡ଼ ଦୁଃଖ
ଖରା ବରଷାରେ ତେଞ୍ଚି ଲବେ ନାହିଁ ସୁଖ ରେ । ୩ ।
କାନନେ ବାଘ ଭାଲୁଙ୍କ ଭୟଙ୍କର ବାଣୀ
ଛନ୍ନ ହେବୁ ବାବୁ ତାଙ୍କ ରବ କର୍ଣ୍ଣେ ଶୁଣି ରେ । ୪ ।
ଭୟଙ୍କର ରୂପ ବାଡ୍ଡେ ଶବ ଲେଖା ଦେଖି
ଡରି ମୋ କୋଳରେ ବସି ବୁଜୁ ପରା ଆଖି ରେ । ୫ ।
ଖାଲ ଖଣା ଗୋଡ଼ କଣ୍ଟା ଗହନ ବନସ୍ତେ
ସୁକୁମାର ପଦ ତୋର ଗୃଳବୁ କେମନ୍ତେ ରେ । ୬ ।
ହଂସୁଲି ତୁଳୀରେ ନନ୍ଦନ ମାଡ଼ଇ ତୋତେ
ଲୋଡ଼ଲେ କି ଶଯ୍ୟା ଆଉ ମିଳିବ ବନସ୍ତେ ରେ । ୭ ।
ତୃଷା କଲେ ତହିଁ ଜଳ ନ ମିଳେ ରେ କହ୍ନା !
କ୍ଷୁଧା କଲେ ଫଳ ମୂଳ ଖାଇବୁ ତୁ ସିନା ରେ । ୮ ।
ଜାଣୁ ଜାଣୁ ଏତେ ଦୁଖେ ପେଷିବ ବନକୁ
ସତ କି ମିଛ ମୋ ବାବୁ ! ବୁଝ ତୋ ମନକୁ ରେ । ୯ ।

ଫୁଟିଯାଏ ଅକ୍ଷି ତୋତେ ନ ଦେଖିଲେ ଦଣ୍ଡେ
ତୁ ଆସିବା ଯାଏଁ ପ୍ରାଣ ଥିବ କି ଏ ପିଣ୍ଡେ ରେ ।୧୦।
ବସ୍ତୁ ରଖିବାରୁ ଧନ ବଞ୍ଚପଣ ଯେତେ
ଲୋଡ଼ାନାହିଁ ମୋର କ୍ଷଣେ ନ ଗ୍ରହିବ ତୋତହିଁ ରେ ।୧୧।
ଗୌର କହେ ଶ୍ରୀମୁଖକୁ ଚାହିଁଥିଲେ ତୋର
କୋଟି ଇନ୍ଦ୍ର ସମ୍ପତ୍ତି ମୁଁ ଗଣୁଥାଇ ଛାର ରେ ।୧୨।

———

[ ଅଠାଅଶି ]

## ଯଶୋଦା ପ୍ରତିବୋଧ

(ରାଗ ମୋହନା ତାଳ ଅଦ୍ଧତାଳ)

ମାଏ ! କାହିଁପାଇଁ ଗୋ ମନା କରୁଛ ମୋତେ
ଏକା ହୋଇ ମୁଁ ତ ବନକୁ ନ ଯିବ
ସଙ୍ଗତରେ ଯିବେ ଗୋପାଳସୁତେ । ଘୋଷା ।
ସୁଦାମ ସୁବଳ ମଧୁମଙ୍ଗଳ
ସବୁ ସଖା ହୋଇଥିବୁ ସୁମେଳ
ତ ମପାଶେ ଥିବୁ ଦୂରକୁ ନ ଯିବୁ
ଘରକୁ ଆସିବୁ ଦିବସ ଅନ୍ତେ ।୧।
ଭାଇ ବଳରାମ ଥିବେ ମୋ ସଙ୍ଗେ
ଖେଳ କଉତୁକ କରିବୁ ରଙ୍ଗେ
ସେ ଯମୁନା ତୀର ସେ ଗୋପ ନଗର
ତହିଁ କପା ଉର ହୋଇବ ଚତ୍ତେ ।୨।

ସକାଳରୁ ସ୍ନାନ ଭୋଜନ ସାରି
ନଦୀଘାଟରେ ରଖିଥିବୁଁ ବାହୁଡ଼ି
ଦ୍ୱିତୀୟ ଭୋଜନ ପାଇଁକ ଅଶନ-
ସାମଗ୍ରୀ ତ ନେଇଥିବୁଁ ସଙ୍ଗତେ । ୩ ।
ଜନନୀଙ୍କ ଅଗ୍ରତରେ ଗୋବିନ୍ଦ
କଲେ ଯେତେ ଯେତେ ରୂପେ ଆଚ୍ଛନ୍ଦ
କେତେବେଳେ ସେ ରାଣୀ ନ ବୁଝନ୍ତି ପୁଣି
ଗଉର ଚରଣ କହଇ ଗୀତେ । ୪ ।

— — —

[ ଅଣନବେ ]

**ପ୍ରଭାତ ଅବକାଶ**

(ରାଗ ସାଗର ତରଙ୍ଗ ତାଳ ଏକତାଳି)

ଉଠ ଉଠ ବେଣୁ ପାଣି !
ଉଠ ବାବୁ ନୀଳାମ୍ବର ଡାକେ ନନ୍ଦରାଣୀ । ପଦ ।
ରଜନୀ ହୋଇଲା ଶେଷ ଡାକନ୍ତି କୁକ୍କୁଟ
ଶମ୍ଭୁଆଳେ କମ୍ବୁଘୋଷ ହେଲାଣି ପ୍ରକଟ । ୧ ।
ପୂର୍ବଦିଗେ ଦିନମଣି ଉଦୟ ହେଲେଣି
କୁମୁଦ ମୁଦ୍ରିତ ହେଲେ ପଦ୍ମ ଫୁଟିଲେଣି । ୨ ।
ପୁର ଅଗଣାରେ ପୋଏ ପୂରିଲେଣି ଆସି
ନାମ ଧରି ଡାକୁଛନ୍ତି ରାମ ହୃଷୀକେଶି । ୩ ।
ଆହେ ରାମ ! ଆହେ ଶ୍ୟାମ ! ଆହେ ପଦ୍ମଆଖି !
ଉଠ ଉଠ ବେଗେ ଯିବ ଗାଈ ବଛା ରଖି । ୪ ।

ମାତାଙ୍କ ବଚନ ଶୁଣି ଉଠି ବେଣୁଧର
ହେଲେ ଅପହୃତ ଜନନୀଙ୍କ ମୁଖ ଚାହିଁ । ୫ ।
ନଦ୍ରାଳସ ମୋହନ ସୁନ୍ଦର ରୂପ ଦେଖି
ସଫଳ ହୋଇଲା ଦ୍ୱିଜ ଗଉରର ଆଖି । ୬ ।

---

[ନବ]

## ସୁତବତ୍ସଳା ଜନନୀ

[ଧୀରେ ଧେନ କାନନରେ କୃଷ୍ଣ ବଳମ୍ବିତ ବୃତ୍ତ]

ଅଳି ଲଗାଇଲୁ ଧନ ! ବନେଯିବା ପାଇଁ
ମୁଁ ଯେତେ କହିଲି ନ ବୁଝିଲୁ ତୁ କହ୍ନାଇଁ । ଶ୍ୟାମ ସୁନ୍ଦର ରେ ।୧
ଗ୍ରାମପାଶେ ଥିବୁ ବାବୁ ଦୂରକୁ ନ ଯିବୁ
ଦାମ ସୁବଳ ସୁଦାମ ସଙ୍ଗ ନ ଛାଡ଼ିବୁ । ଶ୍ୟାମ ସୁନ୍ଦର ରେ ।୨
ଅପରାହ୍ଣ ସମୟକୁ ଚାହିଁ ବସିଥିବ
ଦଣ୍ଡେ ଉଚ୍ଛୁର ହୋଇଲେ ନିଶ୍ଚୟ ମରିବ । ଶ୍ୟାମ ସୁନ୍ଦର ରେ ।୩
ତୋ ବଂଶୀ ସ୍ୱରକୁ ଧନ ଡେରିଥାଏ କାନ
ତାହା ଶୁଣି ପିଣ୍ଡେ ଧରି ଥାଏଁ ମାନ ପ୍ରାଣ । ଶ୍ୟାମ ସୁନ୍ଦରରେ ।୪
ଗୋଧନ ବାହୁଡ଼ା ବେଶ ଦେଖିବାର ଯାଏଁ
ଆହାର ପାଣି ମୋହର ପେଟକୁ ନ ଯାଏ । ଶ୍ୟାମ ସୁନ୍ଦର ରେ ।୫
ଯାଅ ବାପ ରାମ ସଙ୍ଗେ ହୋଇ ଧରାଧର
କୁଶଳେ ଆସିବୁ କଳ ଗୋଳ ତୁ ନ କର । ଶ୍ୟାମ ସୁନ୍ଦର ରେ ।

ନଅ ତୋ ଛଡା ପାଞ୍ଚଣି ମୁରଲୀ କଠାଉ
ର ଦ୍ୱିଜ ବୋଲେ ତୋପଚ୍ଛେ ମୋ ମନ ଥାଉ । ଶ୍ୟାମସୁନ୍ଦର ରେ ॥

---

[ଏକାନବେ]

## ପ୍ରଥମ ବନଗମନ

[ସଖି ! ଆସ ଯିବା ଦେଖି ବୃନ୍ଦା]

ଆଜ କୃଷ୍ଣ ଯିବେ ବନ ଗୋ ସଖି ! କୃଷ୍ଣ ଯିବେ ବନ
ନନ୍ଦ ଯଶୋମଣି ଆଜ୍ଞା କରଛନ୍ତି
ରଖିବେ ବୋଲି ଗୋଧନ ଗୋ ସଖି ! [ଘୋଷା]
ବାଇ ହୋଇଲେ କି ଆମ ରଜାରାଣୀ
ଏମନ୍ତ ବିଚାର କଲେ
ଏ କୁମାର ପୁଅ କହ୍ନାଇଁକି ବନେ
ପଠାଇ ଦେବେ କା ବୋଲେ ଗୋ ।୧।
ପୁରେ ଥାଉଁ ଥାଉଁ ଘଟିଲେ ସଙ୍କଟ
ପଡ଼ୁଥାଇ କେତେ କଷ୍ଟ
ଏନ୍ତୁର ଶାଳରେ ଅସୁରୁଣୀ ମଲ୍ଲ
ଭଙ୍ଗ ପଡ଼ିଲା ଶକଟ ଗୋ ।୨।
ଉପୁଡ଼ି ପଡ଼ିଲ ଯାମଳା ଅର୍ଜୁନ
ପୁଅକୁ ରଖିଲା ବିଧି
ଏହି ପରି କେତେ ବିପତ୍ତି ଘଟୁଛି
ଏହା କି ମନରେ ନାହିଁ ଗୋ ।୩।

ସାତ ପାଞ୍ଚ ନାହିଁ ଏକଇ ନନ୍ଦନ
ସେ ପୁଣି ବାଳୁତ ବଛା ।
ସେ ଯା ବନେ ଯିବେ ଗାଈ ଚରାଇବେ
ନନ୍ଦଘରେ କ ନ ଅଛି ଗୋ ।୪।
ଲକ୍ଷେ ରଖୁଆଳ ରଖିବା ପାଇଁକ
ନାହିଁ ଅବା କେତେ ଧନ ।
ଗୋପରାଜ ଏଡ଼େ କୃପଣ ହୋଇଲେ
ଦେବା ପାଇଁ ବର୍ତ୍ତନ ଗୋ ।୫।
ଆମ୍ଭମାନଙ୍କର ଯେତେ ଅଳଙ୍କାର
ବରତନ କରି ଦେବା ।
କୃଷ୍ଣର ପାଲଟେ ଜଣେ ରଖୁଆଳ
ନନ୍ଦଘରେ ରଖାଇବା ଗୋ ।୬।
ଗୌର ଦ୍ୱିଜ ବୋଲେ ଏ କଥା କାହିଁକ
ଶୁଣିନାହିଁ କାହିଁ କାନେ ।
ମାଆ ଭଗବତୀ ସାହା ହେବେ ତାଙ୍କୁ
ଭୟ କାହାକୁ ଗୋ ମନେ ଗୋ ।୭।

———

[ବସ୍ତ୍ରାନବେ]

ଗୋଚାରଣ ବେଶ

(ରାଗ-ତୋଡ଼ି ପରଜ ତାଳ ଏକତାଳ)

[କ ଦେଖିଲି ଆଜ ନେଷ ଲୋ ସଜନ-ବୃତ୍ତ]

ଦେଖ ସଜନ ଗୋ ! ବନ ଗୋଚାରଣ ବେଶ
ସଖାମେଳେ କେଡ଼େ ଶୋଭା ପାଉଛନ୍ତି ବଳରାମ ହୃଷୀକେଶ । ଘୋ

ୁଦାମ, ସୁବଳ ଶ୍ରୀମଧୁମଙ୍ଗଳ କଙ୍କିଣୀ ଅର୍ଜୁନ ଦାମ
ସ୍ତୋକ ଅନୁଦାମ ଉଜ୍ଜ୍ୱଳ ଶ୍ରୀଦାମ ସୁବାହୁ ଶ୍ରୀବସୁଦାମ ।୧।
ଏହିପରି ଗୋପ ଶିଶୁଗଣ ମେଳେ ଲଉଡ଼ି ଖେଳରେ ରସି
ଚଳନ୍ତି ବଜାଏ ବ୍ରଜରାଜ ପୋଏ ବାଇ ଶିଙ୍ଗା ବେଣୁ ବଂଶୀ ।୨।
କାହାର ମସ୍ତକେ ପାଗ ଚଉତନା କାହା ଶିରେ ଜାମୁଡାଳି
କାହା ମସ୍ତକରେ ଉଡ଼େ ପାଟ ନେତ କା ଶିରେ କାଇଞ୍ଚ ମାଳ ।୩।
ଗଳେ ଗଡଗଡ଼ ଗୁଞ୍ଜମାଳା ଶୋହେ ପୋହଳା ସରକ ସର
ମ କୃଷ୍ଣଗଳେ ଚନ୍ଦ୍ରହାରବଳ ଦୋହଲଇ କେର କେର ।୪।
ତା ପାଞ୍ଚଣି କଟାଉ ଶିକାଛନ୍ଦ ଦଉଡ଼ି ସବୁରି କାଖେ
କ୍ଷମଟା ନାଚରେ ଗୃଳୁଛନ୍ତି ପୋଏ ରାମ ଶାମ ବେନି ପାଖେ ୫।
ଟି ମାଝେ ଘଣ୍ଟି ଘାଗୁଡ଼ି ବାଜଇ କି ସୁନ୍ଦର ରୁଣଝୁଣି
ଗୌରି ଦ୍ୱିଜ ବୋଲେ ବାଜେ ତାଳେ ତାଳେ କହ୍ନାଇଁ ନୂପୁର ଶୁଣି ॥

———

[ଚେଯ୍ୱାନବେ]

ଗୋଷ୍ଠ ବାହୁଡ଼ା

(ରାଗ-କୁମ୍ଭକେଦାର ତାଳଝୁଲା)

[ଝଗଡ଼ ମାନ ହେଲ ହେ ଶ୍ୟାମ ବୃତ୍ତ]

ଦେଖିବ ପରି ଆସ ଗୋ ମିତଣି !
ମଦନ ମୋହନ ଲାବଣ୍ୟ ଠାଣି ଗୋ । ଘୋଷା ।
ଅନୁପମ ଗୃରୁ ମୁରଲୀପାଣି
ବନୁ ଆସୁଛନ୍ତି ଗୋଧନ ଆଣି ।୧।

କ ମଞ୍ଜୁଳ ତାଙ୍କ ବାଙ୍କଗୃହାଣି
ବଢ଼ୋଇ ପଥର ହୋଇବ ପାଣି ।୨।
ଝେମଟା ନାଟକୁ ତମାଳବାଣୀ
ଭଲ ମାନୁଥାଇ ପଥରୁହାଣି ।୩।
ହାସ ଚନ୍ଦ୍ରହାସ କର ଉଗ୍ରଣି
ସଖି ଦମ୍ଭ ତରୁ ଫକାନ୍ତ ହାଣି ।୪।
ଗୋକୁଳେ ଗୋକୁଳେ କାହାର ଆଣି
ଛଡ଼ାଇ ନ ଦେବେ କହ ସିହାଣି ! ।୫।
କେତେ ଶ୍ରେଣୀ କେତେ ସ୍ୱରସ ଗୁଣି
କେଉଁ ବହ୍ନି ଅଛି କାହୁଁ ନମାଣି ।୬।
ଗୌର ଦ୍ୱିଜ ବୋଲେ ନାହିଁ କ ଜାଣି
ସେ ନାଗରମଣି ବଶ୍ୟ ବନ୍ଧାଣି ।୭।

———

[ଚଉସିନବେ]

## ଗୋଧନ ବାହୁଡ଼ା

(ଝୁଲ ଚଉପଦ)

ଦେଖିବ ପରା ଆସ ସଖି ! ଶ୍ୟାମ ସୁନ୍ଦର । ଘୋଷ
ମିଳ ନବଘନ ମୂରତିସାର କଣ୍ଠେ ପତନ ରତନହା
କରେ ବେଣୁ ଧର ଉରେ ବନମାଳୀ ଛନ୍ଦ ସୁନ୍ଦର ।
ଆଗେ ଧେନୁଗଣ ପଛେ ମୁରାର ଚଉପାଶେ ଗୋପକୁମାରେ ଘେ
ଗୋଧନ ବାହୁଡ଼ା କର ଆସନ୍ତି ବ୍ରଜ ପୁରନ୍ଦର ।

ରୋହିଣୀ ନନ୍ଦନ ସଙ୍ଗେ ବେଣୁ ବୀଣା ତାଳ ବଜାଇ ରଙ୍ଗେ
ବାଳ ମଧ୍ୟେ ନୃତ୍ୟ କରି ଗାଉଛନ୍ତି କି ସୁନ୍ଦର ।୩।
ଦ୍ୱିଜ ଗଉର କହେ ଗୋ ସଖି ନିର୍ମଳ ହୋଇଲା ଚରମ ଆଖି
ଗୋପ ସୁତ ସଙ୍ଗେ କିବା ସିନ୍ଧୁ ମଧ୍ୟ କୃଷ୍ଣ ନୀଳ ମନ୍ଦର ।୪।

---

[ପଞ୍ଚାନବେ]

## ଗୋଧନ ବାହୁଡ଼ା

ପ୍ରିୟଆଲି ! ଅନା ବନମାଳୀ ଆସେ ଧେନୁ ବୃନ୍ଦ ଗୋ । ଘୋଷା ।
ସୁବଳ କନ୍ଧରେ ହସ୍ତ    କି ଭଙ୍ଗରେ କରି ନ୍ୟସ୍ତ
ଗାଉଛି ମୁରଲୀ ଗୀତ    ସ୍କନ୍ଧେ ଡୋର ଚନ୍ଦ୍ରବନ୍ତ
ହରିଣୀଆ ମରକତମାଳୀ ଗୋ ।୧।
ଡାହାଣେ ବଳଦେବ ହଳୀ    ଚୌଦିଗେ ସଖାମଣ୍ଡଳ
ଗୁଲୁଛନ୍ତି ଢଳି ଢଳି    ନୃତ୍ୟ ରସରେ କି ଭଳି
ଗୋପପୋଏ ମାରି କରତାଳି ଗୋ ।୨।
କେ ବାଏ ଶିଙ୍ଗା ବଇଁଶୀ    କେହୁ ଭେରୀ ବାଏ ରସି
କେ ତୂରୀ ବାଉଛି ହସି    କେ ମହୁରୀ ସ୍ୱରେ ଖୁସି
କେହୁ ବାଏ ପଟହକାହାଳୀ ଗୋ ।୩।
ଗୋଧନ ବାହୁଡ଼ା ଛବି    କି ମନୋହର ଦିଶଇ
ଧବଳୀ ଶାମଳୀ ଗାଈ    ପଛରେ ଶ୍ୟାମ କହ୍ନାଇଁ
ଭାସେ ଗୌର ପ୍ରେମଅଶ୍ରୁ ଢାଳି ଗୋ ।୪।

---

[ଛପ୍ପାନଭୋ]

## ଗୋ ଚାରଣ ବେଶ

[ପ୍ରିୟ ସହ ଗୁଣ୍ଡ ପଥର କଳଣି ସହ ସହ ବୃତ୍ତ]

ପ୍ରିୟ ଆଳ ! ଅନା ଗୋଠଗାଈଙ୍କୁ ବଜେ ବନମାଳୀ । ଘୋଷା ।

ସୁବଳ ସ୍କନ୍ଧରେ ଭୁଜଭର ଦତ୍ତ କରି ଚିତ୍ତହରୁଚିର

ଭଳି କ ବଥିରେ ଗୃଲନ୍ତ ସଧୀରେ

ଆଗେ ଧେନୁବଚ୍ଛା ବୃନ୍ଦ ଗୃଳ ।୧।

ମଦନ ସୁନ୍ଦର ଗୋପଶଶୀ ମଧୁର ସୁସ୍ୱର ବାଇ ବଂଶୀ

ଶିଶୁଗଣ ମେଳେ ନାଚି କୁତୂହଳେ

ସଖାଧୂତ ଦେଉଛନ୍ତି ଝାଳ ।୨।

ଶିରେ ବାଙ୍କଚୂଳ କି ସୁନ୍ଦର ଚହିଁ ଗୁଞ୍ଜି ଗୁଞ୍ଜ ମୋତିହାର

ଗଳେ ଦୋଳେ ପୁଷ୍ପତୁଳସୀମାଳିକା

ସୁଗନ୍ଧେ ଉଡ଼ନ୍ତି ଅଳିଆଳ ।୩।

କଟୀକି ଶୋଭିତ ପୀତଧଟୀ ତହିଁପରେ ହେମ କ୍ଷୁଦ୍ର ଘଣ୍ଟି

ମୃଦୁ ମଞ୍ଜୁ ସ୍ୱରେ କର୍ଣ୍ଣ ମନ ହରେ

ଶ୍ରୀପଦ ବାଜେଣୀ ବଙ୍କା ଗୃଳ ।୪।

ବନ ମାଳାମ୍ବୁଜ ଶ୍ରୀଅଙ୍ଗ ଟି କେମନ୍ତ ଲାବଣ୍ୟ ପରିପାଟୀ

ହରିଚନ୍ଦନ ଆମୋଦିଆ ମୋହନେ

କେ ନ ଦେବ ମନ ପ୍ରାଣ ଢାଳ ।୫।

ବ୍ରଜ ବଧୂ ପଦ୍ମ ମଧୁକର ନବୀନ କିଶୋର ନଟବର

ଛନ୍ଦସି ମୟୂର ଚନ୍ଦ୍ରି ଜରନ୍ତର

ଗୌର ଦ୍ୱିଜ କରେ ନଉଛୁଳ ।୬।

---

[ସତାନବେ]

## ଗୋଧନ ବାହୁଡ଼ା

(ରାଗ ତୋଡ଼ିପରଜ ତାଳ ଝୁଲା)

[ଦେଖ ସଜନୀ ଗୋ ବନ ଚୋରୁରଣ ବେଶ ବୃତ୍ତ]

ଗୋପ ଦାଣ୍ଡରେ ଗୋ ! ଶ୍ରୀକୃଷ୍ଣଚନ୍ଦ୍ର ବିଜୟେ
ଘେର ପାରୁଶରେ ବେଢ଼ି ଯାଉଛନ୍ତି ସୁକୁମାର ଗୋପ ପୋଏ ॥
ସୁଦାମ ସୁବଳ ଶ୍ରୀମଧୁମଙ୍ଗଳ ଦାମ ଶ୍ରୀଦାମ ଅର୍ଜୁନ
ଉଜ୍ଜ୍ୱଳ ସୁବାହୁ ସ୍ତୋକ ଅନୁଦାମ ଯେତେ ବ୍ରଜ ଶିଶୁଗଣ ।୧।
ଶିଙ୍ଗା ଭେରୀ ତୁରୀ ପତର କାହାଳୀ କା ହାତେ ବେଣୁ ବଇଂଶୀ
ସୁସ୍ୱରେ ବଜାଇ ତା ତା ଥେଇ ଥେଇ ନାଚନ୍ତି କ ରଙ୍ଗେ ହସି ।୨।
ଆଗରେ ଗୋଧନ ପଲକୁ ଅଡ଼ାଇ ତମାଳି ଗୀତ ଗାୟନେ
ଢଳ ଢଳ ଚଳ ଆସୁଛନ୍ତି ଅନା କ ଶୋଭା ରାଜ ଅୟନେ ।୩।
ଗୌର ଦ୍ୱିଜ ବୋଲେ ଧନ୍ୟ କହ୍ନାଇଙ୍କ ଗୋଧନ ବାହୁଡ଼ା ବେଶ
ନୟନ ସାର୍ଥକ ହୋଇଲା ମୋହର ଦେଖି ରାମ ହୃଷୀକେଶ ।୪।

———

[ଅଠାନବେ]

## ଗୋପୀଭାବନା

ନିଶ୍ଚେ ନନ୍ଦସୁତ ଜାଣ ମହତ ବୁଡ଼ାଇବ ।
ସତୀତ୍ୱଧ୍ୱଂସବାନା ଜଗତେ ଉଡ଼ାଇବ । ପଦ ।
ଦିନକୁ ଦିନ ଅନେକ ପୀରତି ବଢ଼ାଇବ
ଅତନୁଶରେ ସୁତନୁତନୁକୁ ସଡ଼ାଇବ ।୨।

ଦେଖାଇ ନାଗର ଭଙ୍ଗୀ ଚିତ୍ତକୁ ଜଡ଼ାଇବ
ଅନୁପୁର ଅଙ୍ଗନାକୁ ଅମଡ଼ା ମଡ଼ାଇବ । ୨ ।
ବଜାଇ ମୁରଲୀ କୁଞ୍ଜବନକୁ କଢ଼ାଇବ
କୁସୁମ ଶେଯ କର୍ପୂର ଧୂଳିରେ ଗଡ଼ାଇବ । ୩ ।
ଆବର ନାରୀଙ୍କ ଦନ୍ତସ୍ଥାବର ଛଡ଼ାଇବ
ଗୋକୁଳ ନାରୀଙ୍କ ଅଙ୍ଗ ଦୁକୂଳ ଫେଡ଼ାଇବ । ୪ ।
ଗୌର ଦ୍ୱିଜ କହେ ଜାନୁପାଦପେ ଚଢ଼ାଇବ
ବଶିକରଣ ବରଦ ମନ୍ତ୍ର ପଢ଼ାଇବ । ୫ ।

—୦—

[ଅନେଶ୍ୱର]

ଗୋପୀଙ୍କ ଭାବନା।

କେ ସହିବ ଆଉ ନନ୍ଦ ତନୟ ଦାଉ ଏ ଗୋ ମା । ଘୋଷା ।

କେ କାହିଁ ନ ଯିବ ଘର ଜଗିଥିବ
ବାହାର ନୋହିବ କେଣେ
ଯେବେ ଯିବ ତେବେ ଆସିଲା ବେଳକୁ
ହୁର ମଡ଼ଥାଏ ଏଣେ ।୧।
ଲୁଚି ଲୁଚି ଯାଇ ମନ୍ଦିରେ ପଶଇ
ଗମ୍ଭିରରେ ଥାଇ ବସି
କାହିଁ ଗଲା ବୋଲି ଖୋଜିଲା ବେଳକୁ
କ ଛଟକେ ଯାଏ ଖସି ।୨।

କେ ବୋଲଇ ଶୁଣ　　　କାଲଆର ଗୁଣ
　　କାଲ ମୋ ପୁରକୁ ଗଲା
କରେ ରଜ୍ଜୁ ଛନ୍ଦ　　　ମୋ ପୁଅକୁ ବାନ୍ଧ
　　ବାଡ଼ ବାଟେ ପଳାଇଲା ।୩।

କେହୁ ଆଗ ବଢ଼ି　　　ବୋଲେ ମୋର ଶାଢ଼ୀ
　　ଚିରିଦେଲା ନନ୍ଦପୁଅ
ମନକୁ ମନ ମୁଁ　　　ଯେତେ ବୁଝାଇଲି
　　ନେତ୍ରୁ ରହୁନାହିଁ ଲୁହ ।୪।

କେ ବୋଲେ ମିତଣି !　　　ଗଲି ପାଣି ଆଣି
　　କେମନ୍ତେ ଅନାଇଁ ଥିଲି
ଏଡ଼େ ଦୁରୁଦଣ୍ଡ　　　ଭାଙ୍ଗି ଘୃତଭାଣ୍ଡ
　　ଆସୁ ଆସୁ ପଳାଇଲା ।୫।

ଦଧି ଦୁଧ ସର　　　ଖାଇବା ଆମ୍ଭର
　　ସେ ଯେବେ ହୋଇବ ନାଶ
କାହାକୁ କହିବା　　　କେମନ୍ତେ ସହିବା
　　ଗୋପରେ କରିବା ବାସ ।୬।

ଗାଳି ତ ନ ଦେବା　　　ମାଡ଼ ନ ମାରିବା
　　ସେ ତ ବ୍ରଜ ରାଜ ସୁତ
ଏ ବଚନ ଶୁଣି　　　କେଉଁ ଗୋପୀ ଭଣି
　　ଯାହା କହିଲ ଏ ସତ ।୭।

କହେ ଦ୍ୱିଜ ଗୌର　　　କାହିଁ ପାଇଁ ଡର
　　ରାଣୀଙ୍କ କହିବା ଆସ

ଯେବେ ନ ବୁଝିବେ ଗୁହାର ଆମ୍ଭର
ଏଠାରୁ ଭାଙ୍ଗିବା ବାସ ।୮।

———

[ଶତେ]

ରୂପାନୁରାଗ

[ଭଲ ଭୁଲିଲୁ ତା ପ୍ରୀତିରେ ପ୍ରାଣସଙ୍ଗିନ ବୃତ୍ତ]

କି ଶୋଭା ନନ୍ଦ ନନ୍ଦନ ଗୋ ଅନା ମୋ ଧନ ! । ଘୋଷା ।

ପ୍ରସନ୍ନ କାଳିଆ ଜହ୍ନ ଶ୍ରୀମୁଖ ନବ ଲାବଣ୍ୟ
କରେ ଆନନ୍ଦ ବର୍ଦ୍ଧନ ଗୋ ।୧।

ମଦ ଘୂର୍ଣ୍ଣିତ ନୟନ ସଜ ନଳିନ ନିନ୍ଦନ
ଅନୁପମ ଅଞ୍ଜନ ଗୋ ।୨।

ମତ୍ତ କରୀନ୍ଦ୍ର ଗମନ ଚହ୍ଲିଁ ମଧୁର ନର୍ତ୍ତନ
କରଇ ବଂଶୀ ବାଦନ ଗୋ ।୩।

ସଖା କନ୍ଧେ କର ଘେନ କମଳ କରମଣ୍ଡନ
ଆଗରେ ବତ୍ସା ଗୋଧନ ଗୋ ।୪।

ଦାମ ସୁଦାମ ଶ୍ରୀଦାମ ଅନୁଦାମ ବସୁଦାମ
ଶିଶୁ ବ୍ରଜ ହୃଷ୍ଟ ମନ ଗୋ ।୫।

ଧବଳୀ ଶ୍ୟାମଳୀ କାଳୀ ନେଉଳୀ ବଉଳୀ ବୋଲ
ଡାକ ଅତ୍ୟନ୍ତ ମୋହନ ଗୋ ।୬।

ଗୋଧନ ବାହୁଡ଼ା ବେଶ ବଳରାମ ହୃଷୀକେଶ
ମୋହୁଛନ୍ତି ତ୍ରିଭୁବନ ଗୋ ।୭।

ଗୌରହରି ଜ ବୋଲେ ସଖି ! ଆଜ ଧନ୍ୟ ମୁଁ ହେଲଇଁ
ନେତ୍ରେ କରି ଦରଶନ ଗୋ ।୮।

———

[ଛନ୍ଦ ଏକ]

## ଗୋପୀ ଭାବନା

(କାହ୍ନି ଗଲେ ମୁରଲୀ ଫୁଙ୍କା ବୃତ୍ତ)

ନବଘନ କାଳିଆ ଶ୍ୟାମ ଭୃ ଲତା ନଚାଇ ଶ୍ୟାହିଁଲାଣି ତ
ନବୀନ ବୟସୀ ନାଗରୀ ମାନଙ୍କୁ
ନବରଙ୍ଗ ବାଣୀ କହିଲାଣି ତ । ଘୋଷା ।
ବାନ୍ଧିଲାଣି ଯତନେ ଚୂଳ ପିନ୍ଧିଲାଣି ପୀତ ଦୁକୂଳ ଗୋ
ସେ ନନ୍ଦବାଳ
କୁଳବଧୂ କୁଳ ବୁଡ଼ାଇବା ପାଇଁ
ତମାଳିଆ ଗୀତ ଗାଇଲାଣି ତ ।୧।
ନ ଜାଣିଲୀ ପରାପ୍ରେ ହୋଇ ନାରୀଙ୍କର ପାଶେ ମିଳଇ
ସେ କଳାକହ୍ନାଇଁ
ପରିହାସ ବାଣୀ ଶୁଣିବା ପାଇଁକ
କର୍ଣ୍ଣ ଡେରି କରି ରହିଲାଣି ତ ।୨।
ବାଳମେଳେ ଖେଳ କୌତୁକ ତହିଁ ସେହିନାହିଁ ଅଧିକ
ସେ ରସରଙ୍କ
ଆରମ୍ଭରେ ତାର ସଙ୍ଗେ ଥାଇ ଆନ
ଆନ ଭାବ ହୃଦେ ବହିଲାଣି ତ ।୩।

ଅଙ୍ଗଦେଶେ ଅନଙ୍ଗ ତାର ଜଣାଗଲା କଲାଣି ଘର
ମନେ ବିଗୁର
ଏକା ହୋଇ ତାର ପାଶକୁ ଯିବାକୁ
ବଳା ହୃଦୟରେ ରହିଲାଣିତ ।୪।
ଗୌର ଦ୍ୱିଜ କହେ ଗୋ ଅଳି ! ଅଳ୍ପଦିନ ଥାଅ ସମ୍ଭାଳି
ବରଜବାଳି !
କେଳି ରଚିବାକୁ କୁଟେଞ୍ଜ ବଞ୍ଚିବାକୁ
ଅନୁକୂଳ ଅସି ହୋଇଲାଣି ତ ।୫।

———

[ଶତେବୁଇ]

ଗୋପୀ ଭବନା

[କାଳନ୍ଦୀ କୂଳକୁ ମୋ ସଖୀଲ ନ ଯା ବୃତ୍ତ]

ନନ୍ଦ ସୁତ ମହତକୁ ବୁଡ଼ାଇବ ଗୋ
ସଖି ଧୂର୍ଣ୍ଣି ଧ୍ୱଂସ ବାନା ଉଡ଼ାଇବ ଗୋ । ଘୋଷା ।
ଦିନକୁ ଦିନ ଅନେକ ପୀରତି ବଢ଼ାଇବ
ଅଚନୁଶରେ ତନୁକୁ ସଢ଼ାଇବ ଗୋ ।୧।
ଦେଖାଇ ନାଗର ଭଙ୍ଗି ଚିତ୍ତକୁ ଜଡ଼ାଇବ
ଅନ୍ତଃପୁରରୁ ଅମଡ଼ା ମଡ଼ାଇବ ଗୋ
ବଜାଇ ମୁରଲୀ କୁଞ୍ଜ ବନକୁ କଢ଼ାଇବ
କୁସୁମ ଶେଯରେ ନତ ଗଡ଼ାଇବ ଗୋ ।୩।

ଆଦର ନାଗର ଦମ୍ଭ ସ୍ଥାବର ଛଡ଼ାଇବ ।
ଅଙ୍ଗ ଦୁକୂଳ କାଞ୍ଚଲ୍ଲ ଫେଡ଼ାଇବ ଗୋ ।୪।
ଗୌର ଦ୍ୱିଜ କହେ ଜାନୁ ପାଦପେ ଚଡ଼ାଇବ
ବଶୀଖ ବଷ ମନ୍ତର ପଢ଼ାଇବ ଗୋ ।୫।

———

[ଶବ୍ଦେ ଛନ୍ଦ]

## ଗୋପୀ ଭାବନା

(ରାଗ ମାଳଶ୍ରୀ ପଦ୍ମପଞ୍ଚ)

କେ ବୋଲେ ସଙ୍ଗାତ !   ବ୍ରଜରାଜ ସୁତ
ଆଜ ତ ବଷମ ଛବ ଗୋ
ଦେଖି ଏ ଆରମ୍ଭ   ରହିବ କ ଦମ୍ଭ
ଦବ ହେଲେ ଯିବ ଦ୍ରବ ଗୋ
ପଶୁ ଦେଖି କ ମୂର୍ଚ୍ଛିବେ
ସୁରନାରୀ ସୁରତ ଇଚ୍ଛିବେ ଗୋ ।୧।
ଚମ୍ପା ଜାତ ଯୂଥି   ମାଧବୀ ମାଳତୀ
ମିଶାଇ ବାନ୍ଧଛି ଜୂଡ଼ା ଗୋ
ତାର ଉପରକୁ   ବରହୀ ଚନ୍ଦ୍ରକା
କଳବଣ ଦୂଳଚୂଡ଼ା ଗୋ
କର୍ଣ୍ଣେ ମକରକୁଣ୍ଡଳ
ମଣ୍ଡି ଦେଉଛି ଗଣ୍ଡ ମଣ୍ଡଳ ଗୋ ।୨।

ଲଲାଟେ କସ୍ତୁରି ତିଲକ ଅଳକ
ଚଳକୁ ଚୂର୍ଣ୍ଣ କୁନ୍ତଳ
ମୁଖାରବିନ୍ଦକୁ ବେଢ଼ି ରହିଛନ୍ତି
କି ଅବା ଭ୍ରମର ମାଳ ଗୋ
ବଙ୍କ କଟାକ୍ଷ ଗୃହାଣି
ନାଗ୍ନି ଲଜ ପକାଉଛୁ ହାଣି ଗୋ ୩।
ତିଳ ପ୍ରସୂନ ନାସିକା ମନୋହର
ଗଜ ମୋତିବର ଶୋହେ ଗୋ
ବିମ୍ବାଧରେ ସ୍ମିତ ହାସ ବିକଶିତ
ଜଗଜ୍ଜନ ମନ ମୋହେ ଗୋ
ଉରେ ହାର ସୁପଦକ
ଦେଖି ହୃଦ ହୁଏ ଦକ ଦକ ଗୋ ।୪।
ସୁବାହୁ ମୃଣାଳ ଜିଣି ପଦ୍ମନାଳ
ବାହୁଟି କଙ୍କଣ ହାର ଗୋ
କଣ୍ଠଠାରୁ ଜାନୁ ଯାଏ ଲମ୍ବିଅଛୁ
ଶ୍ରୀବଇଜୟନ୍ତୀ ହାର ଗୋ
ପରିଧାନ ପୀତପଟ
କେଳି କଦମ୍ବ ମୂଳ ଲମ୍ପଟ ଗୋ ।୫।
ଶ୍ରୀବତ୍ସ ଲକ୍ଷଣ ଅତି ବିଚକ୍ଷଣ
ଦକ୍ଷିଣାଙ୍ଗେ ଯାଏ ଦେଖା ଗୋ
ନୀଳ ମରକତ ଶିଳର ଯେମନ୍ତ
ବାମେ ସୁକୁନ୍ଦନ ରେଖା ଗୋ
କଟୀ କେଶରୀଭୂଷିତ
ଗତକଷ୍ଟ କି ଯିବ ଉଭୁର ଗୋ ।୬।

ରଙ୍ଗିମା ଅରୁଣ ଭଙ୍ଗିମାକୁ ପୂଣ
କି ଉପମା ଦେବା ଛନ୍ଦି ଗୋ
ଚଉଦ ବ୍ରହ୍ମାଣ୍ଡ ଶୋଭାଯାକ ରୁଣ୍ଡ
କଲେହେଁ ନ ଅଣ୍ଟେ ଯହିଁ ଗୋ
ଚାଦେ ଜଡ଼ିତ ନୂପୂର
ନାଦେ କମ୍ପଯାଏ ତିନ ପୁର ଗୋ ।୭।
ବ୍ରଜ ଯୁବରାଜ ହେଲ୍ପପ୍ରାପ୍ତ ଆଜ
ପ୍ରତେ ହେଉଛି ମୋ ମନେ ଗୋ
ଛତ୍ର ଚାମର ଅମ୍ବର କରେ ଧରି
କିଯୋଗିଆ ସଖାମାନେ ଗୋ
କିଷ୍ଟେ ପାଶ ଏ ସୁବଳ
ସଭାପଣ୍ଡା କି ମଧୁମଙ୍ଗଳ ଗୋ ।୮।
କେଉଁ ମଦାଳସୀ ମନ୍ଦେ ଭାଷେ ହସି
କି ବା ଏ ମୀନକେତନ ଗୋ
ବସନ୍ତ ଉତ୍ସବ ଯାତ୍ରା କରିବାକୁ
ବିଜେ କଲ ବୃନ୍ଦାବନ ଗୋ
ସଙ୍ଗେ ଘେନି ସଖାକୂଳ
ନୀପ ମୂଳେ କଲ ଅନୁକୂଳ ଗୋ ।୯।
ବସନ୍ତ କୋକିଳ ତାର ଅଙ୍ଗବଳ
ବାମ ଦକ୍ଷିଣରେ ସ୍ଥିତ ଗୋ
ବିମାନ ଆରୋହି ଖୋଜୁଛି ବିରହୀ
ନାଶ କରିବାକୁ ହିତ ଗୋ
କହେ କେବଣ ନାୟିକା
ରତି ବିନା ସେ ଭ୍ରମୁଛି ଏକା ଗୋ ।୧୦।

କେ ଛଇଳୀ ଭଷେ ମନକୁ ନ ଆସେ
ତୁ ଯାହା ଉପମା ଦେଲୁ ଗୋ
ଶ୍ୟାମ ହଙ୍ଗେ ସମ କରିବାକୁ କାମ
ନାମକୁ ସାର୍ଥକ କଲୁ ଗୋ
କାହ୍ନି ହେବ ସେ ସମାନ
ଯାର ନାମ ମଦନମୋହନ ଗୋ ।୧୧।
ଆଉ କେଉଁ ବାଳୀ ମନେ ମନେ ଭଳ
ବୋଇଲା ଶୁଣ ମିତଣି ! ଗୋ
ଏ ରସାର ସାର କରଣ ବାହାର
ଠୁଳ କଲା ଏଥି ଆଣି ଗୋ
ବଡ଼ କୌତୁକ ବରଣ୍ଣ
ଏ କାଳକୁ ଏ ବବାଦ ରଚ ଗୋ ।୧୨।
ଛପନ ନିଧନୀ ଜଗତ ବନ୍ଧନୀ
ପ୍ରେମତରଙ୍ଗିଣୀ ଘାଟ ଗୋ
ଦେଖ ତାର ତଟେ କଦମ୍ବ ନିକଟେ
ବସାଇଛୁ ପ୍ରେମହାଟ ଗୋ
ଶୋଭ ସମ୍ପତ୍ତି ବଜାର
ସୁବଳାଦି ସଖା ବଣିଜାର ଗୋ ।୧୩।
ରୂପକୁ ତୁଲାଇ ଦେବାକୁ ମୂଲାଇ
ଗ୍ରାହକ ନୋହିଲେ ଯହୁଁ ଗୋ
ଧନୀ ନାମ ଶୁଣି ବଟୋଟା ବହାଣି
ଗୋପକୁ ଆଣିଲା ତହୁଁ ଗୋ
ଦଣ୍ଡି କାଠ ମାପଡାଳ
ଦୋଳ ପାଶରେ କରୁଛୁ ଭୁଲ ଗୋ ।୧୪।

ଗୌର ଦ୍ୱିଜ ଭଣି ହେ ବ୍ରଜ ରମଣୀ !
ଏ ନୀଳ ରତନ ମଣି ଗୋ
ତୁମ୍ଭେ ଭାଗ୍ୟବତୀ ଯୌବନ ସମ୍ପତ୍ତି
ଦେଇ ନଅ ବେଗେ କଣି ଗୋ
ତୁମ୍ଭ ଉରଜ କନ୍ଦର
ସେ ସ୍ଥଳକୁ ଏ ହେବ ସୁନ୍ଦର ଗୋ ।୧୫।

——

[ଟେଢ଼ ସ୍ୱର]

ରୂପାନୁରାଗ

[ରାଧେ ତୋ'ହ ଲାଗି ଶ୍ୟାମ କ ବଞ୍ଚିଇ ଗୋ ଜେମାଦେଇ ! ବୃତ୍ତ]
ମିତ ଅନା ! ଦେଖ କ ସୁନ୍ଦର
ଏ ନନ୍ଦର କହ୍ନା ଗୋ । ଘୋଷା ।
ମସ୍ତକେ ବରହ୍ମୀ ବରହ୍ମ ମୁକୁଟ
ନାନା ପୁଷ୍ପ ବେଢ଼ା ସୁଗନ୍ଧ ପ୍ରକଟ
ବୈଜୟନ୍ତୀ ବନମାଳ ହୃଦତଟ
ଦୋଳେ କ ରଙ୍ଗେ ସୁମନା ଗୋ ।୧।
କଟୀ ଦେଶରେ ତା ସ୍ୱରୁ ପୀତପଟ
କଳାଘନେ କ ଚଞ୍ଚଳା ଝଟଝଟ
କର୍ଣ୍ଣ ଯୁଗେ କର୍ଣ୍ଣିକାର ସୁ ଲଲାଟେ—
ପଟେ ବିନ୍ଦୁ ଗୋରଚନା ଗୋ ।୨।
ଖଣ୍ଡ ଚନ୍ଦ୍ରୋଜ୍ଜ୍ୱଳ ଶ୍ରୀଗଣ୍ଡମଣ୍ଡଳେ
ରତନ ମକର କୁଣ୍ଡଳ ଗୋ ଝୋଲେ

ମୋହନ ମୁରଲୀ ଚୁମ୍ବେ ବିମ୍ବାଧରେ
କି ମନେ କର ଭାବନା ଗୋ ।୩।
ଚରଣେ ରୁଣିତ ବାଜେଣି ନୁପୂର
ଝୁମୁ ଝୁମୁ ନାଦେ ମୋହଇ ନିପୁର
ସତୀ ପତିବ୍ରତା ମତି କରେ ଜୁର
ଧନ୍ୟ ସେ କାଳଆସୁନା ଗୋ ।୪।
ପୁଷ୍ପିତକଦମ୍ବ ମୂଳେ ହୋଇ ଭାସ
ପ୍ରକାଶେ କୋଟି ଅନଙ୍ଗ ପ୍ରଭା ଆଭା
ଗୌର ଦ୍ଵିଜ ବୋଲେ ତୁମ୍ଭେ ତା ବଲ୍ଲଭ—
ପଣଲୁ ଘଟଣା ସିନା ଗୋ ।୫।

———

[ଶବ୍ଦ ପାଣ୍ଠି]

## ରୂପାନୁରାଗ

(ସ୍ଵଗ ତୋଡ଼ପରଜ ତାଳ ଆଡ଼ତାଳ)

ଅନା ରେ ମନାନନ୍ଦ ଛବିକି
ଚୂନା କରେ ସତୀ ମତି ପବିକି ।।
ସେ ବଙ୍କାମୂରତି ଶ୍ୟାମ ସୁନ୍ଦର
ନିତି ନିତି କରେ ନୂଆ ହୃଦର ।୧।
ଅଖିଳ ବରଜ ପୁରେ ଗୋ ଏଥି
ରଖି ଦେବ ନାହିଁ ଯୁବତୀ ଗୋଣ୍ଡି ।୨।
ଅଙ୍ଗ ଭଙ୍ଗୀ ଛଟା ହସ ଗୃହାଣି
ମୁଗୁନି ପଥର କରଇ ପାଣି ।୩।

କି ସୁନ୍ଦର ସେ ମାର ଶୋଭା ଗୋ ମିତ
ଏ ରୂପ ଦେଖିଲେ ହେବ ମୋହିତ ।୪।
ନବୀନ ନଟନ ମୋହନ ବେଶ
ସ୍ତ୍ରୀ କେ ନୋହିବ ଯେବେ ଆବେଶ ।୫।
ତାଳ୍ପରୁ ଚଳପା ସ୍ୱରଜ ସମା
ଭୂଞ୍ଜ ହେବେ ପରା ସବ ଉପମା ।୬।
ଗୌର ଦ୍ୱିଜ ବୋଲେ ସମ ହେଉରେ
ଖୋଜଲେ ନ ଥିବ ଚଉଦ ପୁରେ ।୭।

---

[ଶହେ ଛଅ]

## ରୂପାନୁରାଗ

(କି ନାମ ବୋଇଲୁ ଭୁହି ଗୋ ଲଳିତେ ବୃତ୍ତ)

କହନ୍ତ ଶ୍ରୀମତୀ ଦେଖ ଆଗୋ ଦୂତ
କଦମ୍ବ ମୂଳେ ଘନକୁ
ଲଳିତା ଭାରତୀ ଘନ ନୁହେ ସତ
ସୁହଁ ନନ୍ଦନନ୍ଦନକୁ । ଘୋଷା ।
ରସବତୀ କହି ଘନ ଯେବେ ନୋହି
ବରଷୁଛି ତ ଜଳକୁ
ଲଳିତା ବୋଲଇ ବାରଦ ନୁହଇ
କୃଷ୍ଣଝାଳ ଏ ଚଳକୁ ।୧।

ଭଷି ରସମୟୀ ମେଘ ଯେବେ ନୋହୁ
ଶୁଣ ଅଶନ ସ୍ୱନକୁ
ଲଳତା ବଦନ୍ତ କୃଷ୍ଣ ବଂଶୀଗୀତ
ନ ଶୁଭେ କ ତୋ କର୍ଣ୍ଣକୁ ।୨।
ଶ୍ରୀକଶୋରୀ କହ୍ନ ଆରେ ପ୍ରିୟସହ୍ଟ
ଦେଖ ବଜୂଳ ମାଳକୁ
ଚହୁଁ .କହେ ଆଳୀ ନୁହେ ସେ ବଜୂଳ
କୃଷ୍ଣର ମୋତମାଳକୁ ।୩।
ହସେ ବନୋଦମୀ ଅନା ଲୋ ମିତଣୀ
ସୁନ୍ଦର ଇନ୍ଦ୍ରଧନୁକୁ
ସହଚରୀ ଭଣି କୃଷ୍ଣ ଚୂଳେ ମଣି
ଗୁଞ୍ଜର ଶିଖିପୁଚ୍ଛକୁ ।୪।
ରାଧିକା ଭଣନ୍ତ ଅନା ବକପନ୍ତ
ନୀପଚଳ ଗଗନକୁ
ପ୍ରିୟ ସଖୀ କହେ ବକପନ୍ତ ନୁହେ
କୃଷ୍ଣ ପୀନ ବସନକୁ ।୫।
ଭଣି କୃଷ୍ଣପ୍ରିୟା ଥରୁଛି ମୋ ହିଆ
ଦେଖି ସଖି ! ଏମାନଙ୍କୁ
ଗୌର ଦ୍ୱିଜ ଭଷେ ଗୃଲଯିବା ବାସେ
ଗୃହାଁନା ନୀପ ମୂଳକୁ ।୬।

---

[ଶହେ ସାତ]

## ରୂପାନୁରାଗ

ଏଣୀନୟନାରେ ! ବାରେ ଗୃହଁା ତୁ ଏଣିକ
ଛଇଲ ନଟ ନାଗରମୁକୁଟମଣିକ । ଘୋଷା ।
ଯେ ଦେଖିବ ଥରେ ତା କଟାକ୍ଷସନ୍ଧାଣିକ
ଥଇ ନ ପାଇବ ରଖି ପାରିବ ଆଣିକ ।୧।
ଶୁଣିଲେ ଥରେ ତାହାର ଇଙ୍ଗିତ ବାଣୀକ
ପତିବ୍ରତା ଧର୍ମ ଫିଙ୍ଗିଦେବ ସେ ପାଣିକ ।୨।
ଏ ସଂସାର ଶୋଭସାର ସମ୍ପତ୍ତି ଗୁଣିକ
ବସୁର ସୁରଆନନ ଅଛି ନିର୍ମାଣି କ ।୩।
ଧନ୍ୟ ବୋଲିବା ଏ ରୂପଗଢ଼ା ବିଧାଣିକ
ରସେ ରସାଣି ଦେଇଛି ପୀୟୂଷ ଗୁଣି କ ।୪।
ରବ ପୂଜା ସୁକୃତ ତୋ ଦଶିଲ ଏଣିକ
ଆଣି ଉପରେ ଲମ୍ବା ମାଳ ରତନ ମଣିକ ।୫।
ଗୌର ଦ୍ୱିଜ ଭଷେ ରାଧେ ! ଶୁଣ ମୋ ବାଣୀକ
ଆଉ ଦିନେ ନ ରୁଷିବୁ ମୁରଲୀପାଣିକ ।୬।

---

[ଶହେ ଆଠ]

## ରୂପାନୁରାଗ

(ରାଗ କୀରବାଣୀ ତାଳ ମିଶ୍ରଗୃପ)

[ମନେ ପଡ଼ୁଛି ମାଁ ! ସେହି ଚନ୍ଦ୍ରମୁଖ ବୃତ୍ତ]

ଆଜ ମୁଁ ଦେଖିଲି ଲୋ ମୋହନ ମୂର୍ତ୍ତିକ । ଘୋଷା ।
ନାଚନେ ପଡ଼ିବରତ ଦକ୍ଷ ଯେ ଅନବରତ
ଅଭିନବ ମରକତ ରତନ କାନ୍ତିକ ।୧।

ନୀପମୂଳେ ନିକାଞ୍ଚନେ ଉଭାଗ୍ରଥିଲେ ଯତନେ
ତ୍ରିଭଙ୍ଗିଆ ସୁନ୍ଦର ମୋ ନୟନ ସମ୍ମତିକ ।୨।
ଶୋଭା ସୃଷ୍ଟି ପୁରନ୍ଦର ରସିକ ରସ ଶେଖର
ଗୋପୀହୃଦ ଘନସାର ନିକୁଞ୍ଜ ଦ୍ୱାରିକ ।୩।
ଗଉରଚରଣ ଭଣି ଧନ୍ୟ ଗୋ କଶୋରୀମଣି
କେଉଁ ବ୍ରତେ ମନାଇଛ ସେ ବଂଶୀପତିଙ୍କି ।୪।

---

[ଶବ୍ଦେ ନଅ]

ରୂପାନୁରାଗ

(ମଲ୍ଲୀକାମଣିକ ଛନ୍ଦେ ବୃତ୍ତ)

ଅନାଇଁ ଦେଲି କଷ୍ଟରେ କହ୍ନାଇଁ ଆଡ଼କୁ
ରାଜ ଘାଟ କେଳି ନୀପ ଲତା ଉହାଡ଼କୁ ଲୋ । ଘୋଷା ।

ଏତେ ଛନ୍ଦ ଅଛି ବୋଲି ନନ୍ଦ ପୁଅ ଠାରେ
ଜାଣି ତ ନ ଥିଲି ମୁହିଁ ଲୋ ସଜନି ! ପଡ଼ିଲି ହଟାରେ ।୧।

ପରଶ ପାଷାଣ ଜାତି ସେ କାଳିଆ ଚନ୍ଦ
ମୋ ପାଇଁ ଥିଲି କ ପାତି ଲୋ ସଜନି ! ତା ମୋହନ ଫାନ୍ଦ ।୨।

କ କୋମଳ ଗୁଟ୍ଟବାଣୀ କହି ସେ ଜାଣଇ
ଚୁମ୍ବକ ଟାଣିଲା ପରି ଲୋ ସଜନି ! ଚିତ୍ତକୁ ଟାଣଇ ।୩।

ବେଣି ହୋଇ ନମ୍ରତଟେ ରହେ ସେ ଯେସନେ
ତହୁଁ ବଳି ଚଳିଯିବ ଲୋ ସଜନି ! କେ ଅବା କେସନେ ।୪।

ତା ମୁରଲୀ ବଜା ଖଣ୍ଡି ଫସାରେ କାହିଁଛୁ ?
କରେ ସେ ଯନ୍ତର ସତେ ଲୋ ସଜନ ! କ କର ପାଇଛୁ ।୫।
କୋଟିଏ ଯୁବାର ତାର ଛଇ ଗଞ୍ଜୁଣିକି
ଧନ୍ୟ କେ ଆଣିଛୁ ତାକୁ ଲୋ ସଜନ ! ଗୋକୁଳପୁରୀକ ।୬।
ଗୌର ଦ୍ୱିଜ ବୋଲେ ରାଧେ ! ମିଛେ ସିନା ମାଇଁ
ତୁମ୍ଭ ପ୍ରେମ ସୂଆଗିଆ ସେ ହଟିଆ ନାଗର କହ୍ନାଇଁ ।୭।

---

[ଶବ୍ଦେ ଦଣ]

## ରୂପାନୁରାଗ

(ରାଗ କାମୋଦୀ ତାଳ ଏକତାଳୀ)

ଆଜ ଦେଖିଲି ବନମାଳୀକ ଗୋ
ଏ ପରା ଦଳଥିଲେ କାଳୀ କ ଗୋ । ଘୋଷା ।
ବ୍ରଜବାଳକ ସଙ୍ଗେ ବନୁ ଆସନ୍ତି ରଙ୍ଗେ
ବଜାଇ ବେଣୁ ଶିଙ୍ଗା କାହାଳୀକ ଗୋ ।୧।
ବନ କୁସୁମେ ବେଶ କ ଶୋଭା ପୀତବାସ
କର୍ଣ୍ଣେ କୁଣ୍ଡଳ କରତାଳିକ ଗୋ ।୨।
ବାମେ ବାନ୍ଧିଛୁ ଜୂଡ଼ା ଶିଖିଖଣ୍ଡ ବେଢ଼ା
ଖୋସିଣ ରଙ୍ଗ ଜାମୁଡ଼ାଳିକ ଗୋ ।୩।
ଅଙ୍ଗେ ଗୋରଜ ଧୂଳି ଆସନ୍ତି ଡଳ ଡଳ
ଡାକନ୍ତ ଧବଳୀ ଶ୍ୟାମଳୀକ ଗୋ ।୪।

କ୍ଷୀର ଲବଣୀ ସର ଭୁଞ୍ଜାଇ କଲି ସ୍ଥିର
* ମୋହନ ସେବେ ପାଦ ତଳକ ଗୋ ।୫।

———

[ଶବ୍ଦେ ଏଗାର]

## ରୂପାନୁରାଗ

(ରାଗ ପଞ୍ଚମ ବରାଡ଼ି ତାଳ ତ୍ରିପୁଟା)

ଅର୍ଯ୍ୟମା କୁମାର କୂଳେ କେଳି ଦ୍ରୁମ ମୂଳେ
ସଖି ! ମୁଁ ଦେଖିଲି ଯେଉଁ ରୂପ
ସେ ତ ଅତି ଚମତ୍କାର , କୋଟି ସୃଷ୍ଟି ଶୋଭାସାର
ଲାବଣ୍ୟ ପ୍ରତିମା ରସକୂପ ଗୋ
ପ୍ରିୟସଖି !
ନଟନଟବର ଦିବ୍ୟଠାଣି
ତହିଁ କେତେ ସୁଧା ଅଛି କେ ପାରିବ ଜାଣି ଗୋ ।୧।
ମାଳେନ୍ଦ୍ରମଣି ଦର୍ପଣ ନଯୋଗିଲେ ପଣ ପଣ
ତା କାନ୍ତି ପଣକୁ ନୋହେ ସରି

* ମୋହନ ଦାସ ୬ ଗୌରଚରଣଙ୍କର ପ୍ରିୟ ଶିଷ୍ୟ ଥିଲେ । ତେଣୁ କୃପାରେ ତାଙ୍କ ନାମରେ ଭଣିତା । ଏହି ମୋହନ ଦାସ ଅଧିକାରୀ ବାବାଜି ବୈଷ୍ଣବ ଚରଣଙ୍କ ଦୀକ୍ଷାଗୁରୁ ଓ ଶ୍ରୀ ବଳଦେବଚରଣ ପଟ୍ଟନାୟକଙ୍କ ଅଜାଗୁରୁ ।

———

ନବାମ୍ବୁଦ ମରକତ ଘନକଳା ଜଳଜ ତ
ଲଜ ପାଇ ଯିବେ ଅପସର ଗୋ!
ପ୍ରାଣମିତ !
ଦଳା ଅଞ୍ଜନ କ ହେବ ଲକ୍ଷ
ଖତମାଳ ତମାଳ ତ ହାରିବେ ପ୍ରତ୍ୟକ୍ଷ ଗୋ ।।୨।
ନେତ୍ର ମନ ବିମୋହନ ସୁଲକ୍ଷିତ ଅଘଘନ
ସୌନ୍ଦର୍ଯ୍ୟ ସିନ୍ଧୁରେ ଗଲି ମଜ୍ଜି
ନ ପାଇଲି ଥଳ କୂଳ ମୋର ବନ୍ଧୁତରୁମୂଳ
ସନ୍ଧିତରେ କେଣେ ଗଲା ହଜ ଗୋ
ପ୍ରାଣସଖି !
ଆଜ ପାଉନାହିଁ ଲୋଡ଼ ଲୋଡ଼ି
ମୋ ଲଜ ମହତ ସେ ତ ଦେଲେ ଜାଳପୋଡ଼ି ଗୋ ।୩।
ତାଙ୍କରୁ ତଳପା ଯାଏ ଉପମା ଦେବ କ ପ୍ରାପ୍ୟେ
ତାହା ମୋତେ ଆସୁନାହିଁ କହି
ଉପାୟ କହ କ କରି ହେବ ଶ୍ରୀପଦ କଙ୍କରି
ଜାତ କୁଳ ଶୀଳେ ମୁଁ ନ ରହି ଗୋ
ପ୍ରାଣଦୂତ !
ମାଗୁଅଛି ତୋତେ ମୁଁ ଏତକ
ଭେଟାଇବୁ କ ମୋରେ ସେ ମାଳହାଣିକ ଗୋ ।୪।

———

[ଶଙ୍କେ ବାର]

## ରୂପାନୁରାଗ

(ସଖି ଗୋ ! ମୋର ଲୁଞ୍ଚିଲୁ ଆଜ ବୃତ୍ତ)

ସଜନି ! ଶ୍ୟାମ ଶ୍ରୀଅଙ୍ଗଠାଣି
ବସି ଗଢ଼ିଥିଲା କେଉଁ ବିଧାଣି । ଘୋଷା ।
ଯେତେ ନୀଳତାର ସାରକୁ ଆଣି
ଏକ କରି ତନୁ ଅଛୁ ନିର୍ମାଣି । ୧ ।
ଚୂଳ ତଳକୁ ଲମ୍ବିଅଛୁ ବେଣୀ
କିବା ଖେଳ କରେ କାଳିନ୍ଦୀ ଫଣୀ । ୨ ।
ଭାଲେ ଗୋରଚନା ରଚନା ପୁଣି
ମଧୁର ହାସକୁ ବାଙ୍କ ଚାହାଣି । ୩ ।
ପୀତବାସ ବିଦ୍ୟୁ-ଝଟକ ଜିଣି
ଉରେ ବନମାଳ କଣ୍ଠରେ ମଣି । ୪ ।
କଟୀରେ ଶୋଭନ କ୍ଷୁଦ୍ର କିଙ୍କିଣି
ପଦ୍ମରେ ନୂପୁର ବଳା ବାଜେଣୀ । ୫ ।
ଦେଖି କାହା ଦମ୍ଭ ରହିବ ପୁଣି
ସୁରତ ଇଚ୍ଛିବେ ସୁର ତରୁଣୀ । ୬ ।
ଗୌର ଦ୍ୱିଜ ବୋଲେ ଶୁଣ ମୋ ବାଣୀ
ଦଇବ ଦେଲାଣି ତୁମ୍ଭଙ୍କୁ ଆଣି । ୭ ।

———

[ଶବ୍ଦେ ଢେର]

# ରୂପାନୁରାଗ

(ରମାବର ! ଅନା ଶ୍ୟାମରୂପ ଦର୍ଶେ କ ସୁନ୍ଦର ବୃତ୍ତ)

ପ୍ରିୟ ଆଳି !

ଦୃହିଁ କ ମାଧୁରୀ ଶ୍ୟାମ ଶୋଭଶିରୀ ଗୋ । ଘୋଷା ।

ମହେନ୍ଦ୍ରମାଳରଚନକାନ୍ତ ଜିଣି ଅପଘନ
ତହିଁକ ବଚନବେଶ ମୋହେ ଭବ ପୁରୀ ଗୋ ।୧।

ଯଶୋଦା ନେତ୍ର ଝଙ୍କାଳ ରସାମୃତ ବଟୀମାଳୀ
ଅଭିନବ ନଟବର ଭଙ୍ଗି ଚମତ୍କାରୀ ଗୋ । ୨ ।

ଅଖିଳ ବରଜବାସୀ ମାନଙ୍କ ଆନନ୍ଦ ଶଶୀ
ପ୍ରମତ୍ତ କଳା କୁଞ୍ଜର ନିକୁଞ୍ଜ ବିହାରୀ ଗୋ । ୩ ।

ଦୁଃଖ ପାଶୋଧ ଶ୍ରୀରଙ୍ଗ ଲାବଣ୍ୟ ଠାଣି ହିରଙ୍ଗ
କ ସୁନ୍ଦର କେଳି ନୀପ ମୂଳରେ ଉଦ୍ଧାର ଗୋ । ୪ ।

ବସି କେଉଁ ବିଶ୍ୱକର୍ମା ଗଢ଼ିଥିଲା ଏ ପ୍ରତିମା
ନାଗରୀଙ୍କ ଶିରଅବତଂସ ବଂଶୀଧାରୀ ଗୋ । ୫ ।

ଦ୍ୱିଜ ଗୌର କହେ ଭଲ ଶୁଣ ଗୋ ରାଜୁ ଦୁଲାଳ !
ସେ କାମ ମୋହନ ତୁମ୍ଭ ପ୍ରେମର ଭିକାରୀ ଗୋ । ୬ ।

———

[ଶବ୍ଦ ଚଉଦ]

## ରୂପାନୁରାଗ

(ରାଗ ଖଣ୍ଡକାମୋଦୀ ତାଳ ଆଠତାଳୀ)

[ମୁରଲୀ ତୋରେ ଶରଣ ଗଲି ବୃତ୍ତ]

ଶ୍ୟାମ ତ୍ରିଭଙ୍ଗି ଛଇଳେ ସଙ୍ଗିନ !!
ବାମନୟନୀଙ୍କି କରଇ ବାଇ ଲୋ । ଘୋଷା ।
କଳା ଘଟିଲେ ଦଳାକସ୍ତୁରୀ ଚତା
ବଳାନୁଜଙ୍କୁ ସେ କେଡ଼େ ଶୋଭିତା ।୧।
ଶିଖିପୁଚ୍ଛ ଗୁଚ୍ଛ ସେ ବାଙ୍କ ଚୂଳେ
ଝିଞ୍ଜିଟି କେ ରଙ୍ଗେ ମାଳବକୁଳେ ଲୋ ।୨।
କଣ୍ଠେ ଗଞ୍ଜଫଳ କଳୀର ପ୍ରଭା
ଦେଖି ନ ଭୁଲିବ କେଉଁ ବଲ୍ଲଭା ଲୋ ।୩।
ହଳପ୍ରିୟମାଳୀ ଜାନୁକୁ ବଳି
ଦୋଳି କେଳି କରେ ଅନା କ ଭଳ ଲୋ ।୪।
କରେ ଧରେ ଯେଉଁ ମୋହନ ବଂଶୀ
କେ ବର୍ତ୍ତିବ ଦେଲେ ଅଧରେ ଦଂଶି ଲୋ ।୫।
କୁହୁକ ହୃଦର ଭେଳକ ଲଗା
କଳିନ୍ଦଜାକୂଳ ସରଣୀଜଗା ଲୋ ।୬।
ଭୂଦେବ ଗଉର ଚରଣ ଘଡ଼ି
ଯେ ହେଉ ସେ ହେଉ ହେବ ତା ଦାସୀ ଲୋ ॥

---

[ଶଙ୍ଖ ପନ୍ଦର]

## ରୂପାନୁରାଗ

ଶ୍ୟାମଶୋଭା ଠାଣି ସେ ବଙ୍କଭଙ୍ଗି ସୁହାଣି
ଅଳକେ ନୁହଇ କଳ୍ପେ କଳ୍ପେ କଳ୍ପି
ଗଢ଼ି ଥିଲା ଧନ୍ୟ ଧନ୍ୟ ବନ୍ଧ.ଣୀ ॥
କ ସୁନ୍ଦର ଗ୍ୱରୁ ଚନ୍ଦ୍ରକ ଚୂଡ଼ା
କୂଳବଧୂ କୁଳ ବରତ ଛଡ଼ା
ବକୁଳ କୁସୁମ ତହିଁରେ ସୁଷମ
କଟୀ ତଳକୁ ଲମ୍ବିଅଛୁ ବେଣୀ ।୧।
ବେନି ଶ୍ରବଣରେ ରତ୍ନ କୁଣ୍ଡଳ
ଦୋହଲି ଖେଳଇ ଗଣ୍ଡ ମଣ୍ଡଳ
ଗୋରଚନା ଟିତା କପାଳେ ଶୋଭିତା
ନାସେ ଗଜମୋତିଦର ବସଣୀ ।୨।
ମୁଖେ ମନ୍ଦହାସ ଯେମନ୍ତ ଶୋଭା
ଦେଖିଲେ କେ ଅବା ନୋହିବ ଲୋଭା
ଓଠରେ ସୁରଙ୍ଗ ଦଶେ ଜକ ଜକ
ଦେଖି ଦକ ଦକ ହେବେ ତରୁଣୀ ।୩।
ଶ୍ରୀକରେ ରତନ କଙ୍କଣ ସାର
ଲମ୍ବିଅଛୁ ବଇଜୟନ୍ତୀ ହାର
କଟୀତଟେ ପୀତ ପଟ ବିରଜିତ
କଙ୍କିଣି ମାନସ ନିଅଇ କିଣି ।୪।
ପାଦରେ ନୁପୂର ନାଦ ଝମକ
ଶୁଣି କୂଳବଧୂ ଚିତ୍ତ ଚମକ

ରତ୍ନ ପାଦୁକାଲୁ ନୟନେ ନରେଖି
ଘନଶ୍ୟାମ ଜନ ଗଞ୍ଜର ଭଙ୍ଗି ।୫।

---

[ଶତେକ ଷୋଳ]

## ରୂପାନୁରାଗ

(ରାଗ ଖମ୍ବାଜ ତାଳ ପଦ୍ମପଟ୍ଟ)

ଅନା ଲୋ ସଖି ! କହ୍ନାଇଁ ଠିଆ ଠାଣିକ
ସରି କେ ହୋଇବ ତିନ ଭୁବନେ ବଂଶୀପାଣିକ । ଘୋଷା ।
ତା ଯେଉଁ ତ୍ରିଭଙ୍ଗି ଛନ୍ଦ ବଲୋକଲେ ଆଖିଆର
ଏ ଗୋପରେ କେଉଁ ଗୋପୀ ରଖି ପାରିବ ଆଣିକ ।୧।
ବୃନ୍ଦାବନ କଳାକର ନଟନାଗର ଶେଖର
ରଙ୍ଗିଦେବ ସଖୀଙ୍କର ବରତ ଥାଅ ଜାଣି କ ।୨।
ମାର ମୋହନ ମୂରତ ରୂହିଁ କେ ପଡ଼ିବ ରଣ
ନ ଇଚ୍ଛିବ ଅବା ପ୍ରୀତି ବଳେ ଘୃଷିଣ ବାଣୀକ ।୩।
ରସେ ଗୌର ଦ୍ୱିଜ କହେ ମିଛ ନୁହେ ଆଲୋ ସଖି !
କେ ଶୁଣିବ ଧୈର୍ଯ୍ୟ ବହି ତା ତମାଳ କାହାଣୀକ ।୪।

---

[ଶତେ ସତର]

## ମୋହନ ସୁବେଶ

(ରାଗ ଷଟିଆର ତାଳ ଖେମଟା)

ବାଳଗୋପାଳ ମଣ୍ଡଳୀ ରୁରୁବେଶ ବନାଇଁ
ପଛ ପଟୁଆରେ ବଜେକଲେ ତମ କହ୍ନାଇଁ ।୧।

ମଧ୍ୟେ ବେଢ଼ିଛନ୍ତି ଚଉପାଶେ ଗୋପକୁମର
ଆକାଶରେ ଥାଇ ତାହା ଦେଖୁଛନ୍ତି ଅମର ।୨।

କେ ବଜାଏ ଶିଙ୍ଗା ବେଣୁ କେହୁ ଧରେ ତାଳକ
କେ ଖେମଟା ରଙ୍ଗେନାଚେ ଶୁଣି ବନମାଳୀଙ୍କ ।୩।

କେହୁ ଡିଗ ମାରେ କେହୁ କରେ ଧାଆଁ ଧାଉଡ଼
କେନ କରେ ଧରି କେହୁ ବୁଲଉଛି ଲଉଡ଼ୀ ।୪।

ସମସ୍ତଙ୍କୁ ସମସ୍ତେ ଅଟନ୍ତି ବଡ଼ ଭଙ୍ଗିଆ
ସବୁ ନଟକୃତ କରିବାକୁ ନବରଙ୍ଗିଆ ।୫।

ବଜାଏ ଜଗମୋହନ ବଂଶୀ କର ଧରଣ
ଗୋପଦାଣ୍ଡେ ମଣ୍ଡୁଛନ୍ତି ଲୀଳାଗଣ୍ଡ କରଣ ।୬।

ସାବଧାନେ ବଜେଇକର ବୋଲି କେ ଜଣାଉଛି
ଗଉରଚରଣ ଦ୍ୱିଜ ପଦଣ୍ଡେ ମଣାଉଛି ।୭।

———

[ଶହେ ଅଠର]

## ଗିରଟେକା

( ରାଗ ଲଳିତ ମଞ୍ଜରୀ )

କୋମଳ କରଣ ରାଣୀ ଶ୍ରୀକୃଷ୍ଣଙ୍କୁ କହେ ବାଣୀ
ଶ୍ୟାମଘନ ରେ ବାପ ଜୀବଧନରେ
ମୋ ନେତ ସମ୍ପତ୍ତି କଳାକାହ୍ନୁ
ଏ ସଂସାରେ ଭାଗ୍ୟବତୀ ତୋତେ ମୁଁ ପାଇଲୁ ବନ୍ଧୁ ।୧।

ଦଣ୍ଡେ ହୋଇଲେ ଉଛୁର ଭୋକେ ହେଉ ଥରଥର
ଶ୍ୟାମଘନ ରେ ବାପ ଜୀବଧନ ରେ
କାଲଠାରୁ ନାହିଁ ତ ଭୋଜନ
କେଡ଼େ ଶୁଖିଲା ଦିଶୁଛି ତୋ ଚନ୍ଦ୍ରବଦନ ।୨।
ନଶିଘଡ଼ି ଦୁଇ ନୋହୁଁ ନବେ ଚଲ ପଡ଼ଯାଉ
ଜୀବଧନ ରେ ବାପ ଶ୍ୟାମଘନ ରେ
କାଲ ଉଜାଗର ଧନ ଗଣ
ଘୂର୍ମିତ ଦିଶୁଛି ନବମାଳ ଇନ୍ଦିବର ନେତ୍ର ।୩।
ବଂଶୀ ଅବା କେଡ଼େ ଗରୁ ଦଣ୍ଡେ ଯେବେ ତାକୁ ଧରୁ
ଜୀବଧନ ରେ ବାପ ଶ୍ୟାମଘନ ରେ
କରୁଥାଉ ଏ ହାତ ସେ ହାତ
ବ୍ୟଥା ପାଇବଣି ଭୁଜ ଧରିବାରୁ ଏ ପର୍ବତ ।୪।
ପୋଏ ଧରିଥାନ୍ତୁ ଗିରି ତୁ ବାବୁ ଭୋଜନ ସାରି
ଜୀବଧନ ରେ ବାପ ଶ୍ୟାମଘନ ରେ
ପୁଣି ସଙ୍ଗେ ଧରିବୁ ମନ୍ଦର
ଆସ ମୋ ରାଣ ଟି ବାପ ନବୀନ ଘନ ସୁନ୍ଦର ।୫।
ଯଶୋଦା ବଚନ ଶୁଣି ସକଳ ବାଳକେ ଭଣି
ଶୁଣ ରାଣୀ ଗୋ ! ମାତ ଠାକୁରାଣୀ ଗୋ
ବାମଭୁଜେ ଦିନା ଗୋବର୍ଦ୍ଧନ
ବଢ଼ାଇ ଦିଅ ଦକ୍ଷିଣ କରେ କରନ୍ତୁ ଭୋଜନ ।୬।
ପୁଅଙ୍କ କଷ୍ଟ ଜାଣି ସୁବର୍ଣ୍ଣ ଥାଳରେ ରାଣୀ
ଦିବ୍ୟ ଅନ୍ନ ସେ ଘୃତେ ପରିପୂର୍ଣ୍ଣ ହେ
ଷଡ଼ରସ ଦିବ୍ୟ ବ୍ୟଞ୍ଜନ
ଉଲ୍ଲହୋଇ ସଙ୍ଗେ କୃଷ୍ଣ କରନ୍ତି ଭୋଜନ ।୭।

ଥାଳି ଧର ନନ୍ଦନାରୀ ଚଉପାଶେ ଫେର ଫେର
ପରଶନ୍ତି ସେ ମାଏ ଯଶୋବନ୍ତୀ ହେ
ସଙ୍ଗ ପୋଏ ଭୋଜନ କରନ୍ତି
ଆନନ୍ଦରେ ଗୋପ ଗୋପୀମାନେ ଅନାଇ ଅଛନ୍ତି ।୮।
କେ ବୋଲଇ ଧନ୍ୟ ଧନ୍ୟ ଅମର ପୁର ରାଜନ
ଭଲ ଭଲ ସେ ଇନ୍ଦ୍ର କି ନ କଲା ଗୋ
ଏ ଶିଶୁ ସମ୍ପତ୍ତି ଦେଖାଇଲା
କେ ବୋଲଇ ଆମ୍ଭ ନେତ୍ର କେତେ ତପ କରିଥିଲା ।୯।
ସୁବାସିତ ନୀର ଆଣି ମୁଖ ଧୋଇଦେଲା ରାଣୀ
ବସ୍ତ୍ର ପୋଛୁ ସେ ମୁଖ ନନ୍ଦବହି ହେ
ଗଉର ଚରଣ ଏହା ଇଚ୍ଛି
କନକ ଥାଳୀରେ ଅବଶେଷ ଅନ୍ନ ଯେତେ ଅଛି ।୧୦।

---

[ଶବ୍ଦ ଉଣେଇଶ]

## କୃଷ୍ଣ କରଣି

(ରାଗ ମୋହନା ତାଳ ଝୂଲା)

ଶୁଣ ନନ୍ଦରାଣି ଗୋ ! ତୁମ୍ଭ ପୁଅ କାହାଣୀ
ନଟବର ବେଶ ହୋଇ ନୀପମୂଳେ
ମୋହନ ମୁରଲୀ ବଜାନ୍ତି ପୁଣି । ଘୋଷା ।
ନାନା ଜାତି ବନ କୁସୁମ ସୁଷମ
ଅତି ମନୋହର ଚକୁର ବେଣୀ
ଚୂଳ ଉପରକୁ କି ଶୋଭା ଦଶଇ
ମୟୂର ଷୁରୁ ଚନ୍ଦ୍ରକ ଖଞ୍ଜଣୀ ।୧।

ମକର କୁଣ୍ଡଳ କର୍ଣ୍ଣେ ବସ୍ତକତ
ଘଟଲେ ଗୋରଚନା ନାସାରେ ମଣି
କମ୍ବୁକଣ୍ଠେ କମ୍ବୁନଦର ପଦକ
କଟୀରେ ଖଞ୍ଜିଛୁ କ୍ଷୁଦ୍ର କଙ୍କିଣୀ ।୨।

ଶ୍ରୀଭୁଜେ ରତନ କଙ୍କଣ ଜଡ଼ିତ
ପଦ୍ମରେ ନୁପୁର ବଳା ବାଜେଣି
ଆଭରଣ ପୀତ ବସନ ଝଟକ
ନବଘନେ ଯେହ୍ନେ ସଉଦାମିନୀ ।୩।

ହସ ମନ୍ଦ ମନ୍ଦ ପ୍ରକାଶି ଗୋବିନ୍ଦ
ମୁରଲୀ ଉପରେ ନବେଶି ପାଣି
ଭୁରୁଭଙ୍ଗିକ ତା ଦୂରୁ ଅନାଇଲେ
ମାନ ମାନସରୁ ପକାଏ ହାଣି ।୪।

ସେ ମୁରଲୀ ସ୍ୱନ ଶୁଣିଣ ତପନ—
ନନ୍ଦିନୀ ଉଚ୍ଛୁଳ ବହେ ଉଜାଣି
ମୀନ ଭେକ ଜଳ କୂଳରେ ପଡ଼ନ୍ତି
ଶିଳାମାନେ ଦ୍ରବ ହୁଅନ୍ତି ପାଣି ।୫।

ବସ୍ତ ସ୍ତନପାନ ତେଜଣ ମଉନ
ହୋଇ ଶୁଣନ୍ତି ତା ମୂରଲୀ ବାଣୀ
ଶାର୍ଦ୍ଦୂଳ କୁରଙ୍ଗ ଦ୍ୱନ୍ଦ୍ୱ ଏକସଙ୍ଗ
ନକୁଳର ସଙ୍ଗେ ଖେଳର ଫଣୀ ।୬।

ଶୁଣ ଏ ଗୋ ମାଏ ଜାଣିଲୁ ନଷ୍ଟଏ
ସେ ଭୁମ୍ଭ ତନୟ ହୁଅନ୍ତ ପୁଣି
ତ୍ରିଭୁବନ ସାର ମୋହନ ମୂରତ
ଏ ଗୋପେ ଦଇବ ଗୁଡ଼ିଛୁ ଆଣି ।୭।

ଶୁଣି କୃଷ୍ଣଙ୍କ ବାଣୀ ଯଶୋଦା ରାଣୀ
ସନ୍ତୋଷେ ଗୋପୀଙ୍କି ଦେଲେ ମେଲାଣି
ହରଷରେ ନଣ୍ଡି ହାଦବରେ ବସି
ସେ ଦ୍ବିଜ ଗଜର ଚରଣ ଭଣି ।୮।

---

[ ଶବ୍ଦ କୋଡ଼ଏ ]

ଗୋପବାଳକ ଉକ୍ତି

(ଝୁଲ ଚଉପଦ)

ଶ୍ୟାମ ଛାଡ଼ ନ ଦେବୁ ବାଟ
ଦେଇ ଯାଅ ନୂଆ ଗୋପାଳ ଘାଟ । ପଦ ।

ଛନ୍ଦା ଛନ୍ଦ କର ଭୁ କର
ମଧ୍ୟେ ବ୍ରଜରାଜ କିଶୋର
ଛଳ ଛଳ ବାଳଗୋପାଳ ମଣ୍ଡଳ
ଆନନ୍ଦେ କରନ୍ତି ଗଉଡ଼ ନାଟ ।୧।

ତୁମ୍ଭେ ବାଞ୍ଛାଦାମ ମୋହନ
ଆମ୍ଭ ଆଶା କରବ ପୂର୍ଣ୍ଣ
ଦିଅ ରତ୍ନହାର ପଦକ କୁଣ୍ଡଳ
କାହିଁକ ମୋହନ ଦେଉଛ ଜାଠ ।୨।

ହସି କୃଷ୍ଣ ବୋଲନ୍ତି ଶୁଣ
ଲେଉଟାଇ ଦେବା ମାଗଣ
ଶୁଣି ଗୋପସୁତ ବୋଲନ୍ତି ହେ ମିତ !
ଅମ୍ଭେମାନେ ପଢ଼ି ନାହୁଁ ସେ ପାଠ ।୩।

କୃପାନିଧି ! କରୁଣା କର
ଦେଇଯାଅ ଅଭୟ ବର
କହେ ଗୌର ନଟନାଗର ପାଳଟ
ଲଟ ଦେଲେ ଶିରେ ବାନ୍ଧିବୁ ପାଟ ।୪।

---

[ଶହେ ଏକୋଇଶ]

ରାଧା ଭୂତାବେଶ

(ରାଗ ଖମ୍ବାଜ ତାଳ ପହପଟ)

ସେ କାଳଆଭୂତ ଲାଗିଛି ରାଧାକୁ ସହି
କେ ଜାଣେ କେଉଁ ଗୁଣିଆ କବା ମନ୍ତ୍ରର ପାଙ୍ଗିଛି ॥
କୁହାର ଶବଦ ଶୁଣି ହୁଙ୍କାର ଗର୍ଜନେ ପୁଣି
ଫୁଙ୍କାରରେ ହୁଏ ଗୁଣି ଲୁକାଇ ତା ରାବ କରୁଛି ।୧।
ଉଡ଼ିଗଲେ କୋଇଲିଟି ବୋଲେ ମୁଁ ତୋ ପୋଇଲିଟି
କଳା ଅରବିନ୍ଦ ଦଳ ବକ୍ଷେ କମ୍ପା ଦିଏ ବାଞ୍ଛ ।୨।
ନୀଳ ମେଘେ ଦେଇ ଦୃଷ୍ଟି କ ରାବ ରାବ ବଚେଷ୍ଟୀ
ହସୁ ହସୁ ଦରକଣ୍ଠୀ କଇଁ କଇଁ ତ କାନ୍ଦୁଛି ।୩।
କେଶ ବାସ ଅସମ୍ଭାଳେ ଏକାଇ ତମାଳ ମାଳେ
ବୁଲି ବୁଲି ଧରି ବଳେ ଶ୍ୟାମକର ନ ଛାଡ଼ୁଛି ।୪।
ଗଉର ଚରଣ ଭାଷେ ଏହା ମୋ ମନକୁ ଆସେ
ନିଶ୍ଚେ ଧନୀ ମନଧନ ମୋହନକୁ ସମର୍ପିଛି ।୫।

---

[ଶଙ୍ଖେ ବାଇଶି]

## ଦଧିଗୀତ

ଦଧି କେ ନେବ ଗୋ ବିଳମ୍ବ ନ କର ଆସ
ସବୁଠୁଁ ସରସ ଏ ଗୋଟି ଗୋରସ
ଯାର ମହ ମହ ବାସ ।ଘୋଷା।
ଏ ଦଧିର ସିଧି ନ ଜାଣନ୍ତି ବିଧି
ଆନ ବା ଜାଣିବ କହିଁ
ଗୋପପୁର ବିନୁ ତିନ ଭୁବନରେ
ଖୋଜିଲେ ମିଳିବ ନାହିଁ ।୧।
ନିତ ସେ ନୂତନ ନୁହେ ପୁରାତନ
ସର୍ବଦା ସମ୍ପୂର୍ଣ୍ଣ ମିଠା
ଏମନ୍ତେ ଅନେକ ଯୁଗ ବହିଗଲେ
ତେବେହେଁ ନୋହିବ ଖଟା ।୨।
ଦଧି ଦୁଗ୍ଧ ଘୃତ ଲବଣୀ ସହିତ
ଆବର ଅଛଇ ଛେନା
ଏହୁ ପଞ୍ଚ ଦ୍ରବ୍ୟ ସ୍ୱାଦୁ ସଉରଭ
ଚାଖିଲେ ଜାଣିବ ଦିନା । ୩ ।
ଏ ଦଧିକ ଆଶ କରଣ ମହେଶ
ତେଜି କୈଳାସ ଭୁବନ
ଗୋପେଶ୍ୱର ନାମ ବହି ଗୋପଗ୍ରାମ
ନିତି ଦହି ମରଦନ ।୪।
ଘେନେ କୁଶପାଣି ମହିମା ନ ଜାଣି
ବସ୍ତ୍ରବାଳ ହରିନେଲେ

ଜ୍ଞାନ ପାଇ ପୁଣି ସମର୍ପିଲେ ଆଣି
ଦଧି ଅନ୍ନ ସେବାକଲେ ।୫।
ପୁଣିହିଁ ନାରଦ କରି ବୀଣା ବାଦ୍ୟ
ଗୋପରେ ମିଳଲେ ଆସି
ଗୃହିଣୀ ସେ ଘୋଳ • ସେ ଦନ୍ତୁଁ ଗୋ ପାଳ
ମନ୍ତ୍ରରେ ହୋଇଲେ ଋଷି ।୬।
ଏ ସର ଲବଣୀ ଗୃହିଁ ବେଣୁପାଣି
ଓଲିଆ ହୋଇଲେ ପରି
କଲେ ହରି ଜୁରି ଏ ଗୋପ ନଗରୀ
ଆବର ପଡ଼ିଲେ ଧରି ।୭।
କେତ୍ନ କେତେ ଗାଳ ଦେଲେ ଗୋପବାଳୀ
ପଡ଼ିଲା ହଷମ ଧନ୍ଦା
ସେ ନନ୍ଦନନ୍ଦନ ଯାମଳା ଅର୍ଜୁନ
ଛଳେ ହୋଇଥିଲେ ବନ୍ଧା ।୮।
ଏ ଦଧିର ଗୁଣ କହୁଅଛୁ ଶୁଣ
ଏତେକ ଲକ୍ଷଣ ଅଛୁ
ଶଚ୍ୟ ବଲେ ପାନ କରିଥିଲେ ଆନ
ରସ ନ ରୁଚଇ କଛୁ ।୯।
ନ ଲଗିବ କ୍ଷୁଧା ନ ଲଗିବ ବାଧା
ତାପ ତୃଷ୍ଣା ହେବ ଶାନ୍ତ
ଦନ୍ତୁ ଦନ ତନ୍ତୁ ନୂତନ ଦଶିବ
ଫୁଟି ବଶିଜବ କାନ୍ତ ।୧୦।
କହିଲୁଟି ସତ ଶୁଣ ପ୍ରାଣମିତ
ଅପ୍ରତେ ନ କର ଏଣେ

ଏ ଦହି ଖାଇଲେ ଏ ଦେହକୁ ଛାଡ଼
ଆମ୍ଭ ସଙ୍ଗେ ହେବ ଜଣେ ।୧୧।

ଆଶ ଥିଲେ ଆସ ନ ଥିଲେ ନ ଆସ
ମଧୁରାକୁ ଫେରିଯାଅ
ଯାର ନାହିଁ ଧନ ଥିବ ଅବା ମନ
କାଲି ହେଲେ ନେଇଆଅ ।୧୨।

ଆନ ଧନ ମାନ ହେବ କି ସମାନ
ଏ ପଦାର୍ଥ କିଣିବାକୁ
କଉତୁକ କରି ଆସିଅଛୁ ଫେରି
ତୁମ୍ଭ ମନ ଜାଣିବାକୁ ।୧୩।

ନାନା ପ୍ରେମଭକ୍ତି ସେ ଗୋପ ଯୁବତୀ
ମଥୁରାନାଥଙ୍କି କହି
ଦ୍ୱାରେ ଦ୍ୱାରେ ଫେରି ସକଳ ଆଭିରୀ
ଆନନ୍ଦେ ବିକଲେ ଦହି ।୧୪।

ସାରି କାରବାର ଯେପରି ଯାହାର
ଗୋପକୁ ଚଳିଲେ ସ୍ୱଚ୍ଛେ
ଗଉରି ଚରଣ ଆଶାକରି ପୁଣ
ଧାଇଁଛି ଗୋପୀଙ୍କ ପଛେ ।୧୫।



[ଶବ୍ଦ ଚେଉଣ]

## କୋଳଗୀତ

କୋଳ କେ ନେବରେ ବହନ ହୋଇଣ ଆସ
ବୃନ୍ଦାବନ କୋଳ ଅମୃତରୁ ସ୍ୱାଦ
କର୍ପୂରକୁ ଜିଣି ବାସ । ଘୋଷା ।
ଯାର ମନଧନ ଅଛୁ ସେ ବହନ
ଏ ଫଳ ମୂଲଇ ନିଅ
ଆଗ ପାନ କର କେମନ୍ତେ ମଧୁର
ପଛନ୍ତେ କଉଡ଼ି ଦିଅ ।୧।
ଦ୍ରାକ୍ଷା ବୋଲି କରି ଏକ ଫଳ ଅଛୁ
ତା ଠାରୁ ମଧୁର ନାହିଁ
ଦମୟନ୍ତି ଚେଜି ଦାସୀଭାବ ହେଲେ
ସେ ଫଳର ସ୍ୱାଦୁ ପାଇ ।୨।
ଆବର ନାରଙ୍ଗ ଆଣିଛୁ ସୁରଙ୍ଗ
ସେ ବଡ଼ ଶୀତଳ ରସ
ନାମ ହେଜି ମଜ୍ଜି ପାନ କରିଥିଲେ
କ୍ଷୁଧା ତୃଷା ଯିବ ନାଶ ।୩।
ଆଣିଅଛୁ ଜାମୁ ଜମ୍ବିଲ ଭଲିଅ
ମହୁଲ ଲେଖନ କୋଳି
ଖିରିକୋଳି ଗୁରୁ- କୋଳି ବରକୋଳି
ବନରୁ ଆଣିଛୁ ତୋଳି ।୪।
କରମଙ୍ଗା ବୋଲି ଏକ ଫଳ ଅଛୁ
ସେ ଫଳର ତିନ ଅଂଶ

ତାଲୁ ଖାଇଥିଲେ ନିତାପ ଭୁଟଇ
ଆବର ନ ଥାଇ ହିଂସା ।୫।
ଅଣ୍ଟୁ ନଡ଼କୋଳି ସୁସଞ୍ଚ ଖଜୁରି
ବେତକୋଳି ବଡ଼ ମିଠା
ଲେଖନ କୋଳିର ଏତିକ ଲକ୍ଷଣ
ଅଲପ ଲାଗଇ ଖଟା ।୬।
କଦଳୀ ପ୍ରକୃଣା କପିଥି କାନ୍ଥଆ
କମଳା ଏ ପଞ୍ଚ ଫଳ
ସବୁ ରୂପ ରସ ସ୍ପର୍ଶ ଗନ୍ଧ ମିଶି
ପଞ୍ଚରସ ଯାକ ଠୂଳ ।୭।
କୁଟିଳ କପଟ ବିଷୟ ଲମ୍ପଟ
ଛାଡ଼ି ଏ ଫଳକୁ ଭକ୍ଷ
ଶ୍ରୀକୃଷ୍ଣ କୃପାରୁ ଅବଶ୍ୟ ଲଭିବ
ଧର୍ମ ଅର୍ଥ କାମ ମୋକ୍ଷ ।୮।
ଯେବେ ବ୍ୟାଧିମନ୍ତ କରିବ ବାଞ୍ଛିତ
ଆରୋଗ୍ୟ ହୋଇବ ତନୁ
ଦରିଦ୍ରକୁ ଧନୀ ମୂର୍ଖକୁ ପଣ୍ଡିତ
କରିବେ କାଳିଆ କାହ୍ନୁ ।୯।
ନାରୀମାନେ ଯେବେ ଏ ଫଳ ଭୁଞ୍ଜିବେ
କୃଷ୍ଣେ ହେବେ ଅନୁରାଗୀ
ଧନବନ୍ତ ପୁତ୍ର— ବନ୍ତ ସୁଲକ୍ଷଣୀ
ସଦା ସ୍ୱାମୀସଉଭାଗୀ ।୧୦ ।
ଆଗୋ ଗୋପ ଗୋପି ! ତୁମ୍ଭେ ବଡ଼ ତପୀ
ଏ ଫଳକୁ ଭୁଞ୍ଜିଥାଅ

ମନୋରଥ ପୂର୍ଣ୍ଣ ହୋଇବ ବହନ
କଦମ୍ବ ମୂଳକୁ ଯାଅ ।୧୧।
ଗୌରର ଚରଣ ଏ ଅନୁସରଣ
କରନ୍ତି ବ୍ରଜକୁ ଯିବ
ଦ୍ୱାରେ ଦ୍ୱାରେ ଫେରି ମାଗି ମାଧୁକରୀ
କୁଣ୍ଡଗାରେ ପଡ଼ିଥିବ ।୧୨।

———

[ଶଙ୍କର ଚରଣ]

କଂସ ଆଜ୍ଞା

ଗୋ ଶୁଣ ଏକଥା ଅତି ବଡ଼ମ୍ବଣ
ଲଗିଛି ଅଘଟ ଘଟଣ ଗୋ ଶୁଣ । ପଦ ।
ରାଜା ପେଶିଛି ଚର ପଦ୍ ସହସ୍ର ଘର
ଦେବେ ଏ ଗୋପଲୋକେ ପୁଣ ଗୋ ।୧।
ତାହା ପ୍ରାଣକୁ କାର ଆଶାନାହିଁ ବଞ୍ଚିର
ଜାଣି ଲୋଡ଼ିବ ମରଣ ଗୋ ।୨।
ଏଡ଼େ ନିର୍ଦ୍ଦୟ କଂସ ମାରିବ ଆମ୍ଭ ବଂଶ
ତେଣୁ କରନ୍ତି ଏ ଭିଆଣ ଗୋ ।୩।
ସବୁଦିନେ ତାହାର ଗୋପକୁ ଅହଂକାର
କାହିଁକି ଏଡ଼େ ଦାରୁଣ ଗୋ ।୪।
କେ ବୋଲେ କି କରିବା କାହାକୁ ପଚାରିବା
କେ ଅବା ରଖିବ ଶରଣ ଗୋ ।୫।

କେ ବୋଲେ କପାଁ ଡର    କୃଷ୍ଣ ଛନ୍ତି ଆମ୍ଭର
ଅବଶ୍ୟ କରିବେ ରକ୍ଷଣ ଗୋ ।୬।
କେତେ କେତେ ଦଇତ    ନ କଲେ କି ଉତ୍ପାତ
ସମସ୍ତେ ଲଭିଲେ ମରଣ ଗୋ ।୭।
ଅଘା ଶକଟା ବକା    ତୃଣାବର୍ତ୍ତ ଧେନୁକା
କ୍ଷୀର ସଙ୍ଗେ ପୂତନା ପ୍ରାଣ ଗୋ ।୮।
ଏ ମାନ ଶୁଣି କଂସ    କୃଷ୍ଣଙ୍କୁ କରି ରୋଷ
କରିଛି ଏ କୂଟ ଭିଆଣ ଗୋ ।୯।
ଗଉର ଦ୍ୱିଜ କହେ    ନ କର କିଛି ଭୟେ
ଯା ନାମ ମାନଭିଞ୍ଜାରଣ ଗୋ ।୧୦।

———

[ଶବ୍ଦ ପଚିଶି]

ଗୋପବାଳକ ବିଳାପ

(ତାଳ-ଝ ପଟା)

ଆହେ ହରି ହେ ହରି ହେ
ସାରିଦେଲ ଗୋପପୁରଶିରି ହେ । ଘୋଷା ।
ଆମ୍ଭମାନଙ୍କ ଜୀବନ ନ ଯାଏ କାହିଁକି
ଛାଡ଼ିଛୁ ପିଣ୍ଡେ କି ସୁଖ ପାଇବା ପାଇଁକି ।୧।
ଅକାଳ ଚଡ଼କ ପଡ଼ିନାହିଁ ଆମ୍ଭ ମୁଣ୍ଡେ
କେମନ୍ତେ ଗ୍ଭଲିବୁ ଆମ୍ଭେ ଗୋପପୁର ଦାଣ୍ଡେ ।୨।
ନନ୍ଦରାଣୀ ଶୁଣିଲେ କି ଜୀବନ ଧରିବେ
ଘୁଣ ଘୋଷି ବ୍ରଜବାସୀ ନିଶ୍ଚୟ ମରିବେ ।୩।

ବସିଥିଲୁଁ ମନରେ ସମସ୍ତ ବାଳକ
ତୁମ୍ଭ ସଙ୍ଗେ ସଙ୍ଗ ହୋଇ ବଞ୍ଚିବୁ କାଳକ ।୪।
ଏତେ ବଡ଼ ମନୋରଥ ବିଅର୍ଥରେ ଗଲା
ସ୍ୱପନ ସମ୍ପତ୍ତି ପ୍ରାୟ ବିହି ଭାଙ୍ଗିଦେଲା ।୫।
କାହାକୁ କହିବୁ ଶ୍ଳେଷ କରିଣ ଇଙ୍ଗିତ
ଅହୋରାତ୍ର କାହା ଆଗେ କରିବୁ ସଙ୍ଗୀତ ।୬।
ଏହିରୂପେ ଅନେକ ରୋଦନ କଲେ ସୁତେ
କେହୁଗଡ଼େ କେହୁପଡ଼େ କେରହେ ମୂର୍ଚ୍ଛିତେ ।୭।
ଗୌରଦ୍ୱିଜ କାନ୍ଦିବୋଲେ ଏହି ଆଜ୍ଞା ହେଉ
ତୁମ୍ଭ ନାମ ଧରି ମୁଖେ ଏ ଜୀବନ ଯାଉ ।୮।

---

[ଶହେ ଛବିଶ]

## ଗୋପିକା ବିଳାପ

(ରାଗ ଶୋକମଞ୍ଜରୀ)

ଶ୍ୟାମଘନ ହେ ! ମୋହନ ବଂଶୀ ବଦନ
ବ୍ରଜମଣ୍ଡଳ ମଣ୍ଡନ ଯଶୋଦା ଜୀବନଧନ । ଘୋଷା ।
ଆମ୍ଭମାନଙ୍କର ଚିତ୍ତେ ଆଶା ଥିଲା ଯେତେ ଯେତେ
ସେ ସବୁ ବିଅର୍ଥ ଗଲା କାମନା ନୋହିଲା ପୂର୍ଣ୍ଣ ।୧।
ଆମ୍ଭେ ଅତି ନିଲକ୍ଷଣୀ ହୀନଜାତି ଗୁଆଳୁଣୀ
ଶ୍ରୀମୁଖ ମଧୁପାନକୁ ହୁଅନ୍ତୁ କେହି ଭାଜନ ।୨।
ଏହିଠାରୁ ଗୋପ[illegible] ସରିଲା ହେ ବଂଶୀଧାରି !
ଝୁରି ଝୁରି ଗୋପନାରୀ କେମନ୍ତେ ବଞ୍ଚିବୁ ଦିନ ।୩।

କାହାକୁ ଭଙ୍ଗୀ ବଚନ କରିବୁ ଆମ୍ଭେ ରଚନ
କେହ୍ନ ଭ୍ରୂଭଙ୍ଗୀ କରି ବନ୍ଦେ ଠାରିବ ନୟନ ।୪।
କେ ସର ଲବଣୀ ଚୋରି କରିବଟି ଆମ୍ଭ ପୁଣି
କା ନାମ ଧରି ଗୁହାରି କରିବୁଁ ନନ୍ଦ ଭୁବନ ।୫।
ଆଉ କାହା ପାଇଁ ମାଳ ଗୁନ୍ଥିବୁଁ ହେ ନନ୍ଦବାଳ
କାହା ଶ୍ରୀଅଙ୍ଗେ ବୋଳିବୁଁ ଚୂଆ କର୍ପୂର ଚନ୍ଦନ ।୬।
କାହାକୁ ଆମ୍ଭେ ଗେଲାଇ କହିବୁ ନାସା ଫୁଲାଇ
ଆଉ କ ଶୁଣିବୁଁ କର୍ଣ୍ଣ ମୁରଲୀ ଗୀତ ଗାୟନ ।୭।
ଏ ଆମ୍ଭ ହୃଦୟ ଜାଣ କୁଳିଶରୁ ହେଲା ଟାଣ
ଫାଟି ନ ଯାଇ ରହିଛି ଦେଖିକି ପାପ ଜୀବନ ।୮।
ଯଶୋଦା ଉଦର କ୍ଷୀର ସିନ୍ଧୁ ମଧ୍ୟୁଁ ସୁଧାକର
ଉଦେହୋଇ ଏବେ କାଳୀହ୍ରଦରେ ହେଲ ପତନ ।୯।
ଆମ୍ଭ ନେତ୍ର କର୍ଣ୍ଣ ଯାହା ଦେଖିଲା ଶୁଣିଲା ଏହା
କ କଷ୍ଟ ବହିଲୁ ଆଣି ପାପିଷ୍ଟ ଅଷ୍ଟନୟନ ।୧୦।
ଗଉରଚରଣ ଭଣି ସକଳ ଗୋପ ତରୁଣୀ
କାଳନ୍ଦୀ ହ୍ରଦକୁ ଚାହିଁ କରନ୍ତି ଦୁଃଖେ ରୋଦନ ।୧୧।

---

[ଶହେ ସତାଇଶ]

## କାଳୀୟ ଶିର ନର୍ତ୍ତନ

କାଳୀୟ ଶିରେ ନୃତ୍ୟ କରନ୍ତି ପଦ୍ମନେତ୍ର
ନନ୍ଦସୁତ ପାଦ ଛନ୍ଦ ବନ୍ଦନ୍ତି ଗଉରୀନାଥ ।ପଦ।
ଜୟ ଜୟ ମହାଦେବ ଦେବଙ୍କ ଉପରେ ଦେବ
ଏହି ଆଜ୍ଞା ଶୀଘ୍ର ହେଉ ଏ ଜଳ ହେଉ ଅମୃତ ।୧।

ସମୁଦ୍ର ମନ୍ଥନୁ ଈଶ ଜାତ କାଳକୂଟ ବିଷ
ତାହା ଭକ୍ଷି ନୀଳକଣ୍ଠ ରଖିଛ ପରା ଜଗତ ।୨।

ଶ୍ରୀକୃଷ୍ଣ ବନ୍ଦନା ଶୁଣି ତୋଷହେଲେ ଶୂଳପାଣି
ରଚିଲେ ତାଣ୍ଡବ ନୃତ୍ୟ ବଜାଇ ଡମରୁ ଯନ୍ତ୍ର ।୩।

ଇନ୍ଦ୍ର ଚନ୍ଦ୍ର ଦେବବୃନ୍ଦ ସମସ୍ତେ ହେଲେ ଆନନ୍ଦ
ସୁଧା ଦେଇ ପଠାଇଲେ ଯେନାଇ ବିନତାସୁତ ।୪।

ମିଳିଲେ ଶ୍ରୀକୃଷ୍ଣ ପାଶେ କାଳୀକ ଅନାଇ ରୋଷେ
ପାଦପଦ୍ମ ଚିହ୍ନ ଦୃହିଁ କଲା କୋଟି ଦଣ୍ଡବତ ।୫।

ଶୁଝିଥାନ୍ତି ପୂର୍ବ ଋଣ ତୋ ଶିରେ ତ ଶ୍ରୀଚରଣ
ଦେଖି ମୁଁ ହେଲି କାରଣ ଆଜୁଁ ତୋର ମୋର ମିତ୍ର ॥

ଏତେ କହି ଖଗଇନ୍ଦ୍ର ହେଲା ପରମ ଆନନ୍ଦ
ଶ୍ରୀକୃଷ୍ଣ ମସ୍ତକ ପରେ ସିଞ୍ଚିଲା ନେଇ ଅମୃତ ।୭।

କାଳିନ୍ଦୀ ହ୍ରଦରେ ପଡ଼ି ବିଷ ଦୋଷ ଗଲା ଛୁଡ଼ି
ପୂର୍ବରୁ ଯେ ମରିଥିଲେ ସର୍ବେ ହୋଇଲେ ଜୀବିତ ।୮।

ନାଗପତ୍ନୀମାନେ ମିଳି ଗରୁଡ଼ ଗଗନେ ଚଳି
ସ୍ତୁତି କଲେ ସର୍ବ ବାଳୀ ଶିରେ ଯୋଡ଼ି ବେନି ହସ୍ତ ।୯।

ଯେ ପାଦ ଅଘଖଣ୍ଡନ କାଳୀମସ୍ତକ ମଣ୍ଡନ
ଗଉର ଚରଣ ବୋଲେ ସେ ପଦତଳେ ମୁଁ ଭୃତ୍ୟ ॥

— — —

[ଶହେ ଅଠାଇଶ]

## ନାଗିଣୀ ସ୍ତବ

(ଝୁଲ ଚୌପଦୀ)

ହେ ମୋହନ ! କର ଅବଧାନ
ଶ୍ରୀଚରଣ ତଳେ ଶରଣ ପଶୁଛୁଁ ଦିଅ ବାରେ ପଦ୍ମଦାନ । ପଦ ।

କରେ ଘେନି ଅର୍ଘ୍ୟସ୍ଥାଳୀ ସବୁ ନାଗବାଳୀ
ନନ୍ଦନନ୍ଦନଙ୍କୁ ବନ୍ଦାପନା କରି ଉଚ୍ଛେ ଦେଲେ ହୁଳହୁଳି ହେ ।୧।

ଦୋଷ ଅନୁକ୍ରମେ ଶାସ୍ତି ପାଇଲାଣି ସେହୁ
ଦଣ୍ଡିବା ମଣ୍ଡିବା ପ୍ରଭୁଙ୍କ ଉଚିତ କ୍ଷମାନିଧି ଆଜ୍ଞା ହେଉ ହେ ।୨।

ସହଜେ ସର୍ପ ଜନମ ଅଟଇଁ ଅଜ୍ଞାନ
ସେ କାହୁଁ ଜାଣିବ ଉତ୍ତମ ମଧ୍ୟମ ଗରଳରେ ପରିପୂର୍ଣ୍ଣ ହେ ।୩।

ସକଳ ଜନ ହୃଦରେ ତୁହି ସିନା ଥାଉ
ଯାହାର ଯେମନ୍ତ ଭାବକୁ ତେମନ୍ତ ଭାବେ ତାକୁ ପ୍ରବର୍ତ୍ତାଉ ହେ ।୪।

ଶତ୍ରୁ ମିତ୍ର ପରାପର ନାହିଁ ଯାହା ଠାରେ
ଶୁଣିଥିଲୁଁ ସିନା ଜାଣି-ତ ନଥିଲୁ ଦେଖାଗଲା ଏହିଠାରେ ହେ ।୫।

ଲକ୍ଷ୍ମୀର ନିବାସ ଭକ୍ତ ଭାବୁଥାନ୍ତି ଯାହା
ଏ ବଡ଼ ଦୁର୍ଲ୍ଲଭ ଆମ୍ଭର ବଲ୍ଲଭ ମସ୍ତକେ ବହିଲେ ତାହା ହେ ।୬।

ନାଗ ନାଗଣୀ ବୋଲନ୍ତି ଯେତେ ଥିଲା ଭୟ
ସେ ପଦସଙ୍କେତ ପାଇଲାବେଳରୁ ସଂସାରେ ଆମ୍ଭେ ଅଭୟ ହେ ।୭।

ରଖ କି ନ ରଖ ନାଥ ! ଶରଣ ତୋହର
ଗୌର ଦ୍ୱିଜ ଭଣେ ଆନ ମୁଁ ନ ଜାଣେ ଜଣେ ତ ଠାକୁର ହେ ।୮।

———

[ଶତେ ଅଣଚାଶ]

## ଗୋପିକା ପାଞ୍ଚ

(ତାଳ ଝୁଲା)

ସଖି ! ଘନଶ୍ୟାମ ଯେବେ ସେ
ମୋହନ ମୁରଲି ବଜାଇବେ ଗୋ
ସ୍ତୁରୁ ଚନ୍ଦ୍ରମୁଖୀ ତରୁଣୀ ମାନଙ୍କ
ଚେତା ଘୂନ୍ତଁ ଘୂନ୍ତଁ ହଜାଇବେ ଗୋ ॥
କୁଳବଧୂମାନେ ଧୈର୍ଯ୍ୟ
ବାହାରିବେ ନାହିଁ କେଣିକ
ଯେବେ ବନ୍ଧୁ ବଶେ ମିଳିବେ ତା ପାଶେ
ଛନ୍ଦ କରି ମନ ମଜାଇବେ ଗୋ ।୧।
ବ୍ରଜେ ଯେତେ ନବ ଅବଳା
ବଳଜ୍ଞାରେ ସେ ନନ୍ଦବଳା
ଗୁରୁ ହୋଇ ରୁରୁନଯ଼ନୀମାନଙ୍କୁ
ସ୍ମରଶାସ୍ତ୍ର ଅର୍ଥ ବୁଝାଇବେ ଗୋ ।୨।
ନାରୀଙ୍କର ଲଜ ମହତ
ଜାଣିଥାଅ ହେଲାଣି ହତ
ପାଶୋରି ଥିବ ଯେ କାମକଳା ବିଦ୍ୟା
ନିଶ୍ଚୟ କଶୋର ହେଜାଇବେ ଗୋ ।୩।
କେତେ ରଙ୍ଗେ ଭୁଲାଇବେ ଟି
ବନେ ବନେ ବୁଲାଇବେ ଟି
ଫୁଲଶର ପୂଜା କରିବା ପାଇଁକି
କୁଞ୍ଜେ ଫୁଲଶେଜ ଶେଜାଇବେ ଗୋ ।୪।

ଦ୍ୱିଜ ଗୌର ଚରଣ ଭଣି
ଜାଣିଥାଅ ପ୍ରାଣମିତଣି !
ଚୁମ୍ବ ଆଲିଙ୍ଗନ କରିବେ ପ୍ରଦାନ
ଅଧରୁ ଅମିୟ ଭୁଞ୍ଜାଇବେ ଗୋ ।୫।

---

[ଶଙ୍ଖ ଭରଣ]

କାଳିଆ କରଣୀ

(କୁଞ୍ଜବନରେ କାଳିଆ ବୃତ୍ତ)

ଭଲ ସେ କାଳିଆ କେତେ ରଙ୍ଗରେ ଭୁଲାଇବ
ମୋର ନେତ୍ରକୁ ନାରୀ ମରମକୁ ଘୁଲାଇବ ॥ଘୋଷା॥
ବଜାଇ କଳ ବାଂଶରୀ ମଜାଇବ କୁଳନାରୀ
କଞ୍ଜନୟନୀମାନଙ୍କୁ କୁଞ୍ଜେ କୁଞ୍ଜେ ବୁଲାଇବ ।୧।
କରି ନାନା ପରିପାଟୀ ଗୃହୁଁ ଗୃହୁଁ ଯିବ ଘୋଟି
ଦ୍ୱିରଦଗମନୀଙ୍କର ଦମ୍ଭକୁ ଦୋହଲାଇବ ।୨।
ନାନା ରସେ ରସାଇବ ଅଙ୍ଗେ ଅଙ୍ଗ ମିଶାଇବ
ନାଗରୀଙ୍କ ଉରଜରେ ତା କରଜ ଚଳାଇବ ।୩।
ଯେତେ ଅବୋଧ ଯୁବତୀ ଶୁଣି ତା ଭଙ୍ଗି ଭାରତୀ
ବଳେ ଯାତହୋଇ ଯଉବନକୁ ତ ମୂଲାଇବ ।୪।
ଗଉର ଚରଣ ଭାଷେ ତୋଷିବ ଦମ୍ପତିରସେ
ଜଘନ ଦୋଳରେ ବଜେ କରିଛଣ ଝୁଲାଇବ ।୫।

---

[ ଶବ୍ଦେ ଏକତ୍ରିଶ ]

## ମୁଁ ଜାଣି ଡରୁଥାଇ

(ଝୁଲା ଚଉପଦୀ)

ମୁଁ ଜାଣି ଡରୁଥାଇ ନାମ
ଶୁଣି ଥରୁଥାଇଁ ମୁଁ ଜାଣି
ଅସହଣୀଙ୍କର ମେଳ ସହଣ
ଲୋକଲାଜେ ମରୁଥାଇ ମୁଁ ଜାଣି ॥
ଦିନେ ମୋତେ ଏକା ଦେଖିକରି
ବଳାତରି ଯାଚି ଦେଲା ପାନ ଗୋ
ବୋଇଲା ଏ ମୋର ଉଧାର ରହିଲା
ଦେବୁଟି ଅଧର ପାନ ଗୋ ମୁଁ ଜାଣି ।୧।
ଦିନେ ଉପବନେ ଲୁଚି ବସିଥିଲା
ମୋ ଦରଶନକୁ ଚାହିଁ ଗୋ
ନିଥର ହୋଇ କୁସୁମ ତୋଳୁଥିଲି
ପଛୁ ପକାଇଲା ଯାଇ ଗୋ ମୁଁ ଜାଣି ।୨।
ଆଳୀ ଦୈଗୋଳ ଗାଳିଦେଲେ ଯହୁଁ ସେ
ପଳାଇଲା ବଂଶୀଧରି ଗୋ
କହିଲେ କି ହେବ ସେହି ଦିନଠାରୁ
ରହୁନାହିଁ ବୁକୁ ଥରି ଗୋ ମୁଁ ଜାଣି ।୩।
ଭଲ ମନ୍ଦ ନନ୍ଦପୁଅଠାରେ ନାହିଁ
ମାପ ମୂଳ ଚାରି ଖଟୀ ଗୋ
କଞ୍ଜନୟନଙ୍କୁ ଏକାନ୍ତେ ଦେଖିଲେ
କୁଞ୍ଜକୁ ନିଅଇ ଘୋଷି ଗୋ ମୁଁ ଜାଣି ।୪।

ଗରୁଡ଼ର ଚରଣ ବୋଲେ ଜାଉପଣ
ମୋଠାରେ ପୁଣ ଅଧିକା ଗୋ
ଜାଣି ଏ ଭାବକୁ ମୋର ବଲ୍ଲଭକୁ
କରିଥାଇ ଭାଇ ଲେଖା ଗୋ ମୁଁ ଜାଣି ।୫।

—·—

[ଶନ୍ଦେ ବନ୍ତଶ]

କହ୍ନାଇ ଆନ୍ଦୋଳ

[କେତେ ଛନ୍ଦ ଜାଣେ ନନ୍ଦରାଜାର ଟିକି ପିଲାଟି ବୃତ୍ତ]

ଗୃହୁଁ ତ ନ ଗଲା ବେଳେ କହ୍ନାଇଁ ଆନ୍ଦୋଳ ଏ ଗୋ ମା ।।
ନନ୍ଦ ଘରେ କଅବା ନାହିଁ
ତାର ସ୍ନେହ ନ ଥାଏ ତହିଁ
ଗୃହେ ମୋ ପୁରକୁ ଧାଇଁ ଆସୁଥାଇ
ଦାଣ୍ଡେ ହୋଇ ଧୂଳି ବୋଳ ଏ ଗୋ ମା ।୧।
ଜାଣୁ କନା ପରାଣମିତ
କାହ୍ନୁ ମୋର ହୃଦୟବିତ୍ତ
ପ୍ରାଣୁଁ ତ ଅଧିକ କରି ମଣିଥାଏ
ଆଣୁ କୋଳେ କାଖେ ତୋଳି ଏ ଗୋ ମା ।୨।
ପୟ ଘୃତ ଶାକର ଦଧି
ତାହା ପାଇଁ ଥାଏ ସଂପାଦି
ନୟନରେ ଥରେ ଦଣ୍ଡେ ନ ଦେଖିଲେ
ହୃଦ ହୋଇଯାଏ ଗୋଳ ଏ ଗୋ ମା ।୩।

ଗୌର ଦ୍ୱିଜ ଭଷେ ଏ ରସେ
ଗୋପୀଙ୍କି ସେ ଯତ୍ନଁକ ରସେ
ମୁଁ ତା ଅଛୁ ଜାଣି କୁଞ୍ଜବନେ ଟାଣି
ନେବ କର କୋଳାକୋଳ ଏ ଗୋ ମା ।୪।

———

[ଶଙ୍ଖ ଚେଷଣ]

## କାହ୍ନୁଗୁଣ

ଯିବୁକ ପରତେ ଲୋ ମାଁ ! ତୋର ଅନ୍ତରଗତେ ଲୋ !
ଏଡ଼କ ଅଝଲା ପିଲା ସେ କାଳଆ ସତେ ଲୋ ॥
ନୂଆ ଗୁଆଲୁଣୀ ଛୁଆ ଭୂଆଷୁଣୀ
ସାଥିରୁ କ ସୁଖ ପାଏ
ଯାଆନ୍ତେ ଗାଧୋଇ କାହ୍ନିଁକ ମାଧୋଇ
ପଛରେ ଗୋଡ଼ାଇ ଥାଏ ଲୋ ।୧।

ଅଭ ସଗ୍ଗରେ ଧଇଲେ କାଖରେ
କ ନବଣ୍ଡେ ଧରେ ଜାକ
ନନ୍ଦର ପୁଅକୁ ପନ୍ଦର ହୋଇଲେ
ରଖିବ କ ଆଉ ବାକ ଲୋ ।୨।

ଏ କ ବଡ଼ମ୍ବନା ସେ ଛଇଲ କହ୍ନା
ଟାକଥାଏ ମାପମୂଳେ
କେତେ ଅପାଟକ ଢଗ ସେ ମେଲଇ
ସରମ ନ ପାଇ ଠୁଳେ ଲୋ ।୩।

ଗଉର ଚରଣ ବୋଲେ ଆଚରଣ
ତାର ମୁଁ ନ ଥିଲି ଜାଣି
କ ହଟ ନଟିଆ ଯମୁନାତଟିଆ
ମୋହନ ମୁରଲୀପାଣି ଲୋ ।୪।

———

[ଶବ୍ଦ ଚଉତରଣ]

ନବ ଛଇଳ ରେ !

[ଅଜ୍ଞାନ ତମିରେ ଚକ୍ଷୁ ବୃତ୍ତେ]

ନବ ଛଇଳ ରେ ଗୃହାଁ ଛଇଳ ଛବକି
ଅଧର ଆଦ୍ଧ ନଦଇ ପ୍ରଖ୍ୟାତ ରବକି । ଘୋଷା ।
କଟାକ୍ଷ ଗୃହାଣି ପାଣି କରଇ ପବକ
ଏଥିକ କେଉଁ ଉପମା ଦିଶିବ କବକ ।୧।
ଯାର ବଂଶୀଘୋଷ ବଶ କରଇ ଗାଭୀଙ୍କି
ଜବଲ ତେଜ ଅନାଇଁ ରହନ୍ତ ଭୁବକ ।୨।
ଅବଲା ହୃଦୟ କେତେ ନ ଯିବ ଦ୍ରବ କ
ଯାତ ଯୌବନ ରତନ ଦେବେ ତାକ୍ ବକ ।୩।
ତା ଆଶାରେ ଚନ୍ଦ୍ରାବଳୀ ପୂଜଇ ଦେବାଙ୍କି
ଭୁ ପଗ ଭାବୁ ମୁଁ ଯତେ ତା ଦାସୀ ହେବ କ ।୪।
ଗୌର ଦ୍ୱିଜ ଭାଷେ ରାଧେ ! ଥରେ ମୁଁ ଯିବ କ
ତୋ ପାଇଁ ତା ପାଦ ଧରି ଥରେ କହିବ କ ।୫।

———

[ଖଣ୍ଡେ ପଞ୍ଚଚରଣ]

## ସୁହାଁ କଦମ୍ବମୂଳକୁ

[ କଏ ସେ କେଳିକଦମ୍ବ ତରୁମୂଳେ ବୃନ୍ଦେ ]

ପ୍ରାଣ ସଜନି ରେ ! ସୁହାଁ କଦମ୍ବ ମୂଳକୁ
ଯୁବା ଦମ୍ଭ ହର ବାଙ୍କ ମୋହନ ଚୂଳକୁ ॥
ଅନା ନେନ ପୂର୍ଣ୍ଣ କର କର୍ଣ୍ଣ କୁଣ୍ଡଳକୁ
ଚୂର୍ଣ୍ଣ କୁନ୍ତଳ ଆବୃତ ମୁଖମଣ୍ଡଳକୁ ।୧।
ଛନ୍ତି ବନମାଳୀ ପିନ୍ଧି ପୀତ ଦୁକୂଳକୁ
ଏ ଛବ ରଖିବ ଟିକି ଯୁବତୀକୁଳକୁ ।୨।
ସୁରନାରୀ ଦେଖିଲେ ଲଭିବେ ବାଉଳକୁ
ଆକାଶରୁ ଖସି ନଷ୍ଟେ ପଡ଼ିବେ ତଳକୁ ।୩।
ସୁହାଁ ଆଜାନୁଲମ୍ବିତ ବାହୁଯୁଗଳକୁ
କା ବାଞ୍ଛା ନୋହିବ ବସିବାକୁ ତା କୋଳକୁ ।୪।
ତା ଶୋଭା ଶାର୍ଦ୍ଦୂଳ ସଙ୍ଗଶଙ୍ଖଗଳକୁ
ନମିତ ମାନକେ କରି ଦେବ କବଳକୁ ।୫।
ଘନକେଶୀ ମନ କରିଛନ୍ତି ପା ତଳକୁ
କାଶବାସୀ ଆଶ ରଖି ଥା ତା ପା' ତଳକୁ ।୬।
ଗୌର ଦ୍ୱିଜ ଘେନେ ବ୍ରଜ ଭୂପାଳ ବାଳକୁ
କାଲି ଆଣି ଭେଟାଇବ ଏତିକ ବେଳକୁ ।୭।

———

[ଶବ୍ଦେ ଛନ୍ଦଣ]

## ଆଉ ଦନେ ନ ରୁଷିବୁ

[ନରେଖ ଗୃହାଁରେ ବୃତ୍ତ]

ଏଣୀନୟନରେ ! ଗୃହାଁ ବାରେ ତୁ ଏଣିକ
ଛଇଲ ନଟ ନାଗର ମୁକୁଟ ମଣିକ । ଘୋଷା ।
ଯେ ଦେଖିବ ଥରେ ତା କଟାକ୍ଷ ଗୃହାଁଣି କ
ଥର ନ ଯାଇ କ ରଖି ପାରବ ଆଣିକ ।୧।
ଏ ସଂସାରେ କଏ ଶୁଣି ତା ଇଙ୍ଗିତ ବାଣୀ କ
ପତିବ୍ରତ ଧର୍ମ ଫିଙ୍ଗି ଦେବ ସେ ପାଣି କ ।୨।
ଏ ସଂସାର ଶୋଭସାର ସମ୍ପତ୍ତି ଗୁଣିକ
ବଶ୍ୱର ଗୃହ ଆନନ ଅଛୁ ନର୍ମାଣିକ ।୩।
ଧନ୍ୟ ବୋଲବା ଏ ରୂପଗଡ଼ା ବନ୍ଧାଣି କ
ରସେ ରସାଣି ଦେଇଛୁ ପୀୟୂଷ ପାଣି କ ।୪।
ରବପୃଜା ସୁକୃତ ତୋ ଦଶିଲ ଏଣିକ
ଆଣି ଉରେ ଲମ୍ବା ମାଳ ରତନ ମଣିକ ।୫।
ଗୌର ଦ୍ୱିଜ ଭାଷେ ଗ୍ରଧେ ଶୁଣ ମୋ ବାଣୀକ
ଆଉ ଦନେ ନ ରୁଷିବୁ ମୁରଲୀପାଣି କ ।୬।

———

[ଶ୍ରେ ସଙ୍କିରଣ]

## ମୋହନ ମାଧୁରୀ

(ରାଗ ରାମକେରୀ)

କେ ବୋଲଇ ! ସଖି ଦେଖ ଗୋ ଶ୍ରୀକୃଷ୍ଣର ବଦନ
ବିମ୍ବାଧରେ ହାସ ପ୍ରକଟ କ ଏ ଶୋଭସଦନ ।୧।
ଶିରେ ଶୋଭେ କେକକଲାପ ତହିଁ ବକୁଳ ବେଢ଼ା
ଜାତି ଯୂଥି କୁନ୍ଦ ସେବତୀ ସଜ୍ଜ-ବରତ-ବୁଢ଼ା ।୨।
କର୍ଣ୍ଣଯୁଗେ ରତ୍ନ କୁଣ୍ଡଳ ଭାଲେ ଚନ୍ଦନ ବିନ୍ଦୁ
ନୀଳ ନବଘନେ ଉଦୟ କବା ହୋଇଛୁ ଇନ୍ଦୁ ।୩।
ବଙ୍କ ଭ୍ରୂରୁ ଶରଚ୍ଚାପ ଗୋ ଚାହାଣିର ଛଟକ
ଲଖି ରହେ ସଖି ! ମରମେ ମନ ମୀନ ଅଟକ ।୪।
ଜମ୍ବୁନଦ ହାର ପଦକ କମ୍ବୁକଣ୍ଠେ ଶୋଭିତ
ବୈଜୟନ୍ତୀ ବନମାଳ ଯେ ଜାନୁଯାଏ ଲମ୍ବିତ ।୫।
କଟୀତଟେ ପୀତ ବସନ ହେମ କଙ୍କଣ କରେ
ଗୋଟି ଗୋଟି କ୍ଷୁଦ୍ର କଙ୍କିଣୀ ଶୋଭା ମଧ୍ୟଦେଶରେ ।୬।
ଚରଣେ ଝୁମୁକ ନୂପୁର ରତ୍ନ କଠାଉ ସାଜେ
ନଟବର ବେଶ ହୋଇଣ କର ଅଛନ୍ତି ବଜେ ।୭।
ଗଉର ଚରଣ କହେ ଗୋ କରବା କ ବରଣ
ଆସ ଗୋ ସମସ୍ତେ ପଶିବା କାହ୍ନୁ ପାଦେ ଶରଣ ।୮।

———

[ଶହେ ଅଠରଶ]

## ନାଗର ଛଇଳ କହ୍ନା

ପ୍ରାଣ ସଙ୍ଗିନିରେ ! କଦମ୍ବ ମୂଳକୁ ଅନା
ତ୍ରିଭଙ୍ଗ ଭଙ୍ଗିରେ କି ଶୋଭା ଦିଶୁଛି ନାଗର ଛଇଳ କହ୍ନା ॥
କୂଳ ମୂଳ ଛଡ଼ା ଧଇର୍ଯ୍ୟ ଉଜୁଡ଼ା ସଖୀଙ୍କ ବରତ ଘେନା
କଟାକ୍ଷେ ନିରେଖି ଠାରି ଭୂରୁ ଆଖି ମତ୍ତ କରୁଅଛି ବଣା ।୧।
କି ସୁନ୍ଦର କରି ବଜାଏ ବାଂଶରୀ ଧରି ସବୁଙ୍କରି ଘେନା
କାନରେ ପଶିଣ ଜ୍ଞାନ ହଜାଏ ଏ କିସ ମା ବିଡ଼ମ୍ବନା ।୨।
ଦେଖି ତା ଆରମ୍ଭ କାଖୁ ଖସେ କୁମ୍ଭ ଦମ୍ପତିର ହୁଏ ଚୂନା
କେଉଁ ମନ୍ତ୍ରବଳେ ଏତେ ସବୁ କରେ ତାକୁ ଏକା ତାହା ଜଣା ।୩।
ଏ କି ପରମାଦ ନ ଚଳଇ ପାଦ ସେ ମରମ କହ କିନା
ଗୌର ଦ୍ୱିଜ ଭଣି କପଟୀ ଗୋ ହେଲେଣି ସେ ଆମ୍ଭ ସଙ୍ଗାଳ ସିନା ॥

---

[ଶହେ ଅଣେଇଶ]

## ନୀପମୂଳ କିଶୋର

କେ ବୋଲଇ ଦେଖ ଦେଖ ମିତ
ତରୁ ମୂଳେ ଅଛି ଆଚମ୍ବିତ ।୧।
କିବା ସେ କାମ ମୋହନ ଛବି
ଦେଖି ମନ ନେତ୍ର ଯାଏ ଦ୍ରବି ।୨।
କେ ବୋଲଇ ଦେଖ ଦେଖ ଆଳି
କିବା ଏ ନୀଳ ରତନ ମାଳୀ ।୩।

ଏ ବଚନ ତାର ତହୁଁ ଶୁଣି
ବୋଲେ ଶୁଣ ପ୍ରାଣ ସଙ୍ଗାତୁଣି ! ।୪।
କମ୍ପି ଯାଏ ଉର ଗୃହୁଁ ଦୂରୁ
ନଷ୍ଟେ ଏ ନବ ତମାଳ ତରୁ ।୫।
କେ କହେ ସେ ନୋହେ ସଖୀ ଶୁଣ
ଅଞ୍ଜନ ପୁଞ୍ଜ ନଷ୍ଟପୂ ଜାଣ ।୬।
କେ ବୋଲେ ସଜନ ! ନୁହ ଢଣା
ନୀଳ ପର୍ବତ ଏ ଗଳ୍ପ ଜଣା ।୭।
ଏହି କାଳେ ଏକ ଗୋପୀ କହି
ମୋହଠାରୁ ଶୁଣ ପ୍ରାଣସହି ! ।୮।
ନଷ୍ଟେ ଏ କାଳନ୍ଦୀ ଜଳରାଶି
ଭ୍ରମର ଉଜାଣି ବହି ଆସି ।୯।
ସ୍ଥକତ ହୋଇଣ ନୀପମୂଳେ
ରହିଛନ୍ତି ଦେଖ ବେନଡ଼ୋଳେ ॥
କେ ବୋଲଇ ନ ପାରିଲ ଜାଣି
ହେଲେ ହେବ ଇନ୍ଦ୍ରବର ଶ୍ରେଣୀ ॥
ଏହା ଶୁଣି କେଉଁ ଗୋପୀ ଭାଷି
ମିତ ମୁଖ ଗୃହୁଁ କହେ ହସି ।୧୨।
ବୋଲେ ସଖୀ ବହୁକଥା ନୁହ
ନକଟକୁ ଯିବା ରହ ରହ ।୧୩।
ନିରେଖିବା ନେହେ କ ପଦାର୍ଥ
ତେବେ ଯିନା ପ୍ରାଣ ହେବ ସାର୍ଥ ॥
କେ କେତେ ପ୍ରକାରେ କହେ ବାଣୀ
କେ ବୋଲଇ ଇନ୍ଦ୍ର ନୀଳମଣି ॥

ଏହା ପ୍ରାୟ ସବ ଗୋପନାରୀ
ନାନାବିଧ ଉପମା ମାନ କରି ।୧୭।
ସ୍ଥମୁରେ ପ୍ରବେଶ ହେଲେ ଯାଇଁ
ତ୍ରୈଲୋକ୍ୟ ମୋହନ ରୂପ ଚାହିଁ ॥
ଅପଲକ ନେତ୍ରେ ସବବାଳୀ
ଆନନ୍ଦରେ ଦେଲେ ହୁଳହୁଳି ।୧୮।
ଗଉର ଚରଣ ଏହି କାଳେ
ମାନସେ ଭାବନା କରି ଭୋଳେ ॥
ଗୋପୀଙ୍କ ପଛରେ କରଯୋଡ଼ି
ସାଷ୍ଟାଙ୍ଗେ ଚରଣ ତଳେ ପଡ଼ି ।୨୦।

———

[ଶବ୍ଦ ଚୂଳଣ]

**କାଳିଆ କଳଙ୍କ ଅଠା**

(ରାଗ ମୋହନା ତାଳ କର୍ଣ୍ଣାଟ)

ରାଧେ ପ୍ୟାରୀ ! ଗୋ ; ବଂଶୀଧାରୀ ।
କପଟ ପଟଳ ପୀରତି ଜାଣେ କହ୍ନାଇ ଦଗାଦାରୀ । ଘୋଷା ।
ମୋହନ ବଚନ ମିଠା ଖଣ୍ଡ ସରପୁଳି ମିଠା
ଚାଖିଲେ ଅଙ୍ଗରେ ଲାଗି ରହିବଟି
କାଳିଆ କଳଙ୍କ ଅଠା ।୧।
ପୁଣି ବୋଲେ ରହ ରହ ଗୋ ଆଜ କାହିଁ ଯିବୁ କହ ?
ଛପି ଛପି ପରା ନିତି ଯାଉ ଥାଉ
ନ ଦେଖାଇ ମୋତେ ଦେହ ।୨।

ଏହା ଥିଲ କାହିଁ ଶୁଣା ଗୋ ବାଟେ ଖୋଳଥାଇ ଖଣା
ଖସି ପଡ଼ ଜଳ କଳସି ଘଜଇ
ନାଗ୍ରଙ୍କି ନ ଥାଏ ଜଣା । ୩ ।

ଫିଙ୍ଗି ପୁଣ ନଦମାଟି ଗୋ ! ଫିଟାଏ କବାଟ ଛାଟି
ଶୋଇବା ଠାବରୁ କେତେ ଚଞ୍ଚଳରେ
ଅଞ୍ଚଳ ନଅଇ କାଟି । ୪ ।

ମାରେ ପଗ ଭୂରୁଛଟା ଗୋ ! ପଦ୍ମରେ ସେ ପୀଡଝଟା
ଏ ଗୋପନଗରେ ପ୍ରତି ଘରେ ଘରେ
ନତ ବସିଥାଏ ହଟା । ୫ ।

ରୋପେ ସିନା କର ଘର ଗୋ ! ନତ ଏହ୍ନ ହରବର
ମାଧୋଇ ଲଗି ମା ଯମୁନା ଗାଧୋଇ
ଯିବାକୁ ହେଲଣି ଡର । ୬ ।

ଲଗି ଥାଏ ଜଳଘାଟି ଗୋ ଜାଣେ କେତେ ପରପାଟୀ
କଞ୍ଜନୟନାଙ୍କି ନିକୁଞ୍ଜ ବନରୁ
ପଛରୁ ନଅଇ ଗୁଟି । ୭ ।

କେ ଭଲ କହିବ ଆଉ ଗୋ ନନ୍ଦ ତନୟର ଦାଉ
ତା କଥା ମନରେ ପଡ଼ଯାଉଥିଲେ
ବାହାର ପଡ଼ଇ ହାଉ । ୮ ।

ଗଉର ଚରଣ ଗାଇ ଗୋ ! ଶୁଣ ବନୋଦିନୀ ରାଇ
ତୋ ମୁଖ କମଳ ଚୁମ୍ବିବା ପାଇଁକ
କଳା ମଧୁକର ବାଇ । ୯ ।

---

[ଶବ୍ଦେ ଏକସ୍ଥଳଶ]

## ବାଜେ ମୋହନ ବାଂଶରୀ

ବାଜେ ମୋହନ ବାଂଶରୀ ଗୋ ରାଧେପ୍ୟ ର ! ॥
କ ମନୋହର ଘୋଷଣ ଶୁଣ କର୍ଣ୍ଣଡ଼େର
କାଳନ୍ଦୀ ତଟରୁ ଚଉ ଆସୁଛି ପ୍ରସର ଗୋ ।୧।
ସା ର ଗ ମ ପ ଧ ନ ସା ସ୍ୱରକୁ ଉଚ୍ଚାର
ପଞ୍ଚବରତ ବଢ଼ାଇ ଦେଉଅଛି ସାର ଗୋ ।୨।
ରସି ନକଟକୁ ତାର ଗଲେଟି ବାହାର
ଧୃତି-ସମ୍ଭାଳ ରହିବ କେଉଁ ବ୍ରଜନାରୀ ଗୋ ।୩।
ସୁଗୁଣ ସୁନ୍ଦର ପଣ ଚିତ୍ତରେ ଦଗୃର
ତା ପରଗୃଶ ନୋହିବ କେ ବା ନ ପଗୃର ଗୋ ।୪।
ଭୁ ତ ନୂତନା ଛଇଲୀମଣି ସୁକୁମାରୀ
କ ନୋହିବୁ ସତେ ହେଲେ ଝପ ଅଭିସାରୀ ଗୋ ।୫।
ଗଉର ଚରଣ କହେ ସେ ମୁରଲୀଧାରୀ
ତୋ ନାମେ ବାଉଛି ବେଣୁ ହେବାକୁ ସଗୃରୀ ଗୋ ।୬।

---

[ଶବ୍ଦେ ବସ୍ୟାଳଶ]

## କପଟୀ ଲମ୍ପଟୀ ଶଠ

(ରାଗ ନଳମ୍ମ ଗୌଡ଼ା ତାଳ ଝମ୍ପା)

ଲୁଞ୍ଜରେ କ ଗୁଟଞ୍ଜ ସୁମନାରେ
ଶ୍ୟାମ କଲା ମଧୁଲଟ ବଟପୀ ବାଧାରେ । ଘୋଷା ।

ଯାଅ ଗୋ ସଜନୀ କହ କେତେ ହେଉ ରହରହ
ସେ ମୋହନ ସ୍ୱନ ଶୁଣି ମରେ ଥରହରେ ।୧।
ଜାଣେ ସେ ଚୁମ୍ବନ ବିଧି ମକରନ୍ଦ ପାନ ସିଦ୍ଧି
ଯେତେ ଅନୁସରେ ଫୁଲ ସରଇ ଲଜରେ ।୨।
ସେ ମୋହନ ବଂଶୀଧାରୀ କେବେ ନୁହନ୍ତ କାହାର
ଆମ୍ଭେ ସବୁ ସଖୀ ଝୁରି ରହୁ ଭବନରେ ।୩।
କପଟୀ ଲମ୍ପଟୀ ଶଠ ହୃଦୟୁ କମଠ ପୃଷ୍ଠ-
ଠାରୁ ଗୋ କଠିନ ଗୌର କହେ ଏ ରସରେ ।୪।

---

[ଶଢେ଼ ଢେଙ୍କାଳିଶ]

## ଆଉ ପାରବୁକି ତା ପାଲରୁ ବର୍ତ୍ତି

(ଗଡଧ ତୋହଲଗି ଶ୍ୟାମ କ ବଞ୍ଚ-ବୃତ୍ତି)

ରେ ରସବନ୍ତ ! ଆଉ ପାରବୁ କି ତା ପାଲରୁ ବର୍ତ୍ତି ॥
କାହିଁକରେ ଚନ୍ଦ୍ରାନନା ଏକା ତୁ ଗଲୁ ଯମୁନା
ବେଳୁଁ କରୁଥିଲ ମନା ନ ଯେନିଲୁ ସୁଲୋଚନା
ବାଇକଲା ତୋତେ ସେ ମୂରତି ।୧।
ତା ମଧୁର ବଂଶୀତାନ ଗୀତକୁ ଡେରିଲୁ କାନ
ଏବେ ତ ବ୍ୟାଧି ବିଷମ ଯୋଟିଗଲା ଅନୁପାନ
ନାହିଁ କହୁ ଏଥିକି ଶ୍ରୀମତୀ ।୨।
ବଗୁର ପାରିଲୁ ନାହିଁ କୁତୂହଳେ ଦେଲୁ ଗୃହିଁ
କୂଳରୁ ଉଛନ୍ନ ତୁହି ହେଲୁଟି ରେ ଜେମାଦେଇ !
ଏ ଫସାରେ ତୋର କେଉଁ ଗତି ।୩।

ଅଝଟେଞ୍ଜି ଗଲୁ ତ ଯଡ଼   ଘାରହେବୁ ଷୋଳଘଡ଼
ସେ ଜାଣେ ମୋହମା ଜଡ଼   ଚନ୍ତାରେ ଯିବୁଟି ସଢ଼ି
ଅରଜିଲୁ ଜାଣି ଅଜାରତ   ।୪।
ଯା ହେବାର ହେଲା ଧନ   ଭଜ ଯେ ନନ୍ଦନନ୍ଦନ
ବ୍ୟାଧି ହେବ ଉପଶମ   କୁଟେଞ୍ଜି ହୋଇଲେ ମିଳନ
ଗୌର କଥା କର ସନମତ   ।୫।

---

[ଝହେ ତଉଗଲଶ]

## ନନ୍ଦସୁତ ମନ୍ଦ ବୋଲ ଜାଣି ତ ନ ଥିଲ

ସହି ! ତାଲୁ ସାନ କ ବତ୍ସରୁ
ଶୁଣିବୁ କ ଗୁପତ କଥାଏ ମୋହଠାରୁ । ଘୋଷା ।
କେ ଅବୁଦ୍ଧି ବୁଦ୍ଧି ମୋତେ ଦେଲା ଲୋ ମିତଣି !
ବାହାର ପଡ଼ିଲ ଏକା ଘରୁ କୁମ୍ଭ ଘେନି ।୧।
ନନ୍ଦସୁତ ମନ୍ଦ ବୋଲ ଜାଣି ତ ନ ଥିଲ
ଛଉଛର ହୋଇ ଯମୁନାକୁ ଧାଇଁଗଲ ।୨।
ନଦୀକୂଳ ବନଗୋଠ ତାର କ୍ରୀଡ଼ାସ୍ଥଳୀ
କାହିଁ ଛପିଥିଲା କହ୍ନା ପାଶେ ଗଲି ମିଳି ।୩।
ତାକୁ ଦେଖି ମୋ ପିଣ୍ଡରୁ ଉଡ଼ିଲା ସାହସ
ବସୁରିଲ ନଷ୍ଟଏ ତ ଆଜ ଗଲ ନାଶ ।୪।
ସ୍ୱହୁଁ ସ୍ୱହୁଁ କାହୁଁ କ କଥାଏ ଦେଲା ମେଲ
କହିବାକୁ ଲଜ ଶୁଣି ଆଚମ୍ବିତ ହେଲ ।୫।

କ କହିବ କାହିଁ ଯିବ ନ ବଳିଲ ପଥ
ଉଦବେଗେ ପୂର୍ଣ୍ଣ କଲ ତାର ମନୋରଥ ।୬।
ଚଳକୁ ଲପନ ଯୋଡ଼ି ପୁରକୁ ଅଇଲ
କହାକୁ ନ କହି ଭୂନ ହୋଇ ମୁଁ ରହିଲ ।୭।
ଏତ୍ତିକ ହଟିଆ ପୀତପଟିଆ ନଟିଆ
ଗୌର ବୋଲେ ସେ ତ ଗେ ପୀତବ୍ରଲମଟିଆ ।୮।

---

[ଶବ୍ଦ ଇଙ୍ଗୃଳଣ]

**ସଙ୍ଗାତ ଗୋ କାହିଁ ଥିଲ କ**

[କାହିଁଗଲେ ମୁରଲୀ ଫୁଙ୍କା ବୃତ୍ତ]

ସଙ୍ଗାତ ଗୋ ! କାହିଁ ଥିଲ କ
ଯମୁନା ପାଣିକ ଯାଇଥିଲ କ
କଳା କହ୍ନାଇଁକ ଦେଖିବା ପାଇଁକ
ନସର ପସର ଧାଇଁ ଥିଲ କ ॥
କପଟ ଗୃଭୁସି ଦେଖାଇ ଚଭୁସି
ନୀପମୂଳକୁ ଧଂସାଇ ଥିଲ କ
ସୁକୁଟ ଦେଖାର ଉକୁଟକୁ ଶୁଣି
ବୁକ ଦୁକୂଳ ଖସାଇ ଥିଲ କ ॥
କଣି କଣି ଝିଣି ଝିଣି ଶୁଭିବାକୁ
ଅଣ୍ଟାରେ ମେଖଳା ନାଇଥିଲ କ
ଦୁମୁ ଦୁମୁ ଶୃଳ ଝୁମୁଝୁମୁ କରି
ନୂପୁର ବାଜେଣି ବାଇଥିଲ କ ॥

ସଙ୍ଗ ଆଳୀ ପଛେ ଯାଇ ଅତରଚ୍ଛେ
କେଶିକ ତେରଛେ ସୁହାଁଥିଲ କ
ଅନାଉଁ ଅନାଉଁ ଅବା କାହ୍ନୁ ତହୁଁ
ଅମୂଲ୍ୟ ଦରବ ପାଇ ଥିଲ କ ॥
ସେ ବନମାଳୀକ ଧନମାଳୀ ବୋଲ
ତମାଳରୁ ପଦେ ଗାଇଥିଲ କ
ବଳେ ଧରୁ ଧରୁ ମଧୁର ଅଧରୁ
ଦରଗ୍ଲେବା ପାନ ଖାଇ ଥିଲକ ॥
ପ୍ରମତ୍ତ କୁଞ୍ଜର ଗମନା ଗୋ କେଳ
କୁଞ୍ଜ କଉତୁକ ଗୃହ୍ୱଁଥିଲ କ
ଗୌର ଦ୍ୱିଜ ବୋଲେ ପୁଲକ ଅନ୍ତରେ
ପରବ୍ରହ୍ମଣକୁ ଭ୍ୟାଇଥିଲ କ ॥

---

[ଶତେ ଛୟାଳଶ]

ବୃଷଭାନୁ ଜେମା ରାଧିକା

(ନନ୍ଦ ସୁତ ମୋର ଜୀବନ ବୃତ୍ତ)

ବୃଷଭାନୁ ଜେମା ରାଧିକା ! ଯମୁନା ପାଣିକ ନ ଯିବୁ ଏକା
ନେବ ହୃତୁମତ ସାରବ ମହତ
ବାଟ ଘାଟ ଯଗା ସେ ଗିରଟେକା ॥
ନତ ଯାଉ ଆସୁ ଯମୁନା ଯାଢା କରେ କାଳଆ ସୁନା
ରଖିଥାଏ କହ୍ନା ଭଙ୍ଗି କରେ ଚୂନା
କାଖର କଳସୀ ଫିଙ୍ଗିଣ ଟେକା ।୨।

ସେଥିରୁ ସେ କ ସୁଖ ପାଏ ଦୁର୍ଗୁଣ ଇଁ ସୁଅଗୁଥାଏ
କର ଘେନାଘେନ କଲେହେଁ ଦସ୍ୟୁନ
ନ ଘେନଇ ଭଲ ଅଧାମରଙ୍କା ।୨।
ନକର ମୁଁ କହୁଛି ତୋତେ ତାକୁ ନ ଯିବୁଟି ପରତେ
ତୋର ନେତ୍ରରେ ଲୁ ଲୋତକ ପୋଛୁବୁ
ନବାର ନ ପାର ସ୍ଥଡରୁ ଦକା ।୩।
ଦ୍ୱିଜ ଗୌର ଚରଣ ଭଣି ପାଦ ଗୃଲୁଥିବୁଟି ଗଣି
ଉଚ୍ଛୃଙ୍ଖଳ ପଣେ କାହ୍ନୁକୁ ରସିଲେ
ତୋ ନାମେ ଉଡ଼ିବ ନନ୍ଦା ଢୋକା ।୪।

———

[ଏକଶ ସତଗୃଳଶ]

ନାଗରୀରେବଗଞ୍ଜନବାନା

( ନ କହେ ଏ ଗିର ହେ ବୃତ୍ତେ )

ଘେନ ମୋର ମନା ଗୋ ମତ୍ତଗଜଗମନା !
ଜାଣି ଥା ସୁମନା ସଙ୍ଗସଖୀ ବନା
ଏକା ହୋଇ ନ ଯିବୁ ଟି ଯମୁନା । ଘୋଷା ।
ଯାର ନାମ ଶ୍ୟାମସୁନ୍ଦର ଜାଣଇ ସେ କେତେ ଛନ୍ଦର
ହଟି ମୁରଲି ଅଗ୍ରତେ ବାନ୍ଧଥାଏ
ନାଗରୀ ରେବ ଗଞ୍ଜନ ବାନା ।୧।
ଲଖିଥାଏ ମନ୍ଥ ଧୂଳକ ଫିଙ୍ଗି କୁଳବଧୂ ବାଳୀକ
ଜଡ଼ାଇ ମନକୁ କଢ଼ାଇ ନଅଇ
ନିକୁଞ୍ଜ ବନକୁ ନନ୍ଦର କହ୍ନା ।୨।

ଗୋପ ନବ ନାୟିକାଗଣ  କୁଚ  କୃଷ୍ଣଙ୍କର  ଗ୍ରହଣ
ନୋହୁଛୁ ବୋଲି କେ କହିପାରିବ କି
ସହି ! ସମସ୍ତେ ପଡ଼ିଲେଣି ଚହ୍ଲା ।୩।
ଲୁଚି ଥାଇ ଲତା ତଳରେ  ନଖି କଳ  ନୀପ ମୂଳରେ
ଛପି ଛଇଳ ଲୁଚି ଅସି ମିଶଇ
ଦେଛୁ କୋଳ କରେ କୁଳ ଅଙ୍ଗନା ।୪।
ଦ୍ୱିଜ ଗୌର ଚରଣ ଭଣି  ଜାଣିଥାଅ କିଶୋରୀମଣି !
ତୋ ସଙ୍ଗମେଳଣ ହେବ ଯେଉଁଦିନ
ସମ୍ପୂର୍ଣ୍ଣ ହେବ ତା ମନକାମନା ।୫।

———

[ଶ୍ରୀହ ଅଠଗ୍ଭଳଣ]

ଇନ୍ଦ୍ରନୀଳମଣିତର

(ରାଗ ତୋଡ଼ିପରଜ ତାଳ ଆଠତାଳୀ)

ହଙ୍ଗୀତ ! ମୋହନ ମୁରଲୀ ଧର
ସେ ଭଙ୍ଗୀ ଯା କରେ ସଂସାର ଯ କରେ
ଦେଖାଇଲେ ନ ଥିବ ପର ରେ ।ଘୋଷା ।
ଜାଣେ କି ମୋହିନୀ ଗୋପକୁଳମଣି
ଯୁବତୀଙ୍କ ଦମ୍ଭହର
ନିମିଷେ ବସ୍ତ୍ର ହୁଡ଼ଇ କିଶୋର
ତଳକର ନେତ୍ରଠାରେ ।୧।
କୋଟି ସୃଷ୍ଟିସାର ଶୋଭର ସମ୍ଭାର
ହୋଇଛି ଯେ ଅଙ୍ଗେ ଭର

ଅଛୁ କ ଉପମା ଅନୁପମ ରମା
ଆଶ୍ରିତ ମୂର୍ତ୍ତିକ ଧସ ରେ ।୨।
କେଉଁ ଗଗନରୁ ଖସି ପଡ଼ୁଛୁ ମା
ଇନ୍ଦ୍ର ମଳମଣି ତସ
କୋଟିଏ ହୋଇଲେ କୋଟିସଂଖ୍ୟା କାମ
ସମ ନୋହିବେ ତା ପଦ ରେ ।୩।
ଇସେ ଗୌର ଭଣି ବରଜରମଣୀ
ମାନଙ୍କ ମହତ ହସ
ତୋତାଙ୍କେ ଅଛୁ ଡାକ ରଖିବ କି ବାକ
ବେଳହୁଁ ମୂକନାମସ ରେ ।୪।

---

[ଏକଶ ଅଣତୃଶ]

ଝୁରି ଝୁରି ଯିବୁଟି ସର

(ସ୍ୱଗ ମୋହନା ତାଳ ପଡ଼ପଟ)

[ଛନ୍ଦ ନ କର କୁନ୍ଦନ ଗୋର ବୃତ୍ତ]

ଝୁରି ଝୁରି ଭୁ ଯିବୁ ଟି ସର
ସେ ହଟିଆ କପଟିଆ ନୁହେ ଟି କାହାର । ଘୋଷା ।
ନାସମସ ଗିରଧାରୀ ସଙ୍ଗ କଲୁ ନ ବଣୁର
ଯାହା ଦୁଃଖେ ହେଲୁ ଯାର ଆହାରେ କିଶୋର ! ।୧।
ମୋ ଗଣ ଟି ସୁକୁମାର ! ବୁଝାନା ନୟନୁ ବାର
ରହ ଧନ ଧୈର୍ଯ୍ୟ ଧର କରମ ଅଦଣ୍ଡ ।୨।

ସେ ନିକୁଞ୍ଜ ବନସ୍ଥଳୀ ହସାଇ ଦେଲା ଉଦାସ
କାହିଁରେ ବୋହିଲୁ ରାଧେ ! ତାକୁ ଆଶା କରି ।୩।
ଦ୍ୱିଜ ଗୌର ବୋଲେ ପ୍ୟାରୀ କହୁଛୁ ତୋ କର ଧରି
ବକାଚରି କଥା ମନୁ ପକା ଭୁ ପାଶୋରି ।୪।

---

[ଏକଣ ପର୍ବଣ]

ମନା କରଥିଲ ମୁହିଁ

( ରାଗ ତୋଡ଼ିପରଜ ଆଠତାଳୀ )

ଲେ ଶ୍ରୀମନ୍ତ ! ମନା କରଥିଲ ମୁହିଁ
ସେ ନଟକୁଟିଆ କହ୍ନାଇଁ ଦେଖାଲୁ
ଭରସିଲୁ କାହିଁ ପାଇଁ । ଘୋଷା ।
ସୁନା ଶ୍ରୀଅଙ୍ଗରେ ଛଅ ଘାଆ କଲୁ
ପକାଇ ଅଧାର ସ୍ଥଇ
କେତେ ଅବଗ୍ରରେ ଏକୁଟିଆଟାରେ
ଯମୁନାକୁ ଗଲୁ ଧାଇଁ ।୧।
ଜାଣିଛୁ ତ ତନ ଦନ ନ ଦେଖଇଁ
ଧାଇ ପ୍ରାଣ ଅଛି ଖାଇ
ଆଣିଛୁ ତ ପୁଣି କୋଳକୁ ଆଦରି
କେଉଁ ବସ୍ତୁଆସ ପାଇ ।୨।
କାଳିଆ ନାଗର ଗର ଯେ ବଷମ
ମନ ପସାଣ ଶୋଷଇ
ତାଳିଆ ବର ନସ୍ୱନ ଭୁଲୁ ଯାହା
କଲେ ଏ ସମସ୍ତ ଖାଇ ।୩।

ସୁଧାର ନୁହଇ ଉଧାର ହେବ କେ
ତା ପାଇଲୁ ଆମ୍ଭେ ସହି !
ତାର ଅତ୍ୟାଗ୍ନର ଆର ନାରଖାର
କର ଦଏ ଦୁଧ ଦହି ।୪।
ଏଡ଼କ ମାରଣା ମୋ ମନେ ଧାରଣା
ନ ଥିଲ ଶ୍ରୀମଣ୍ଡ ରାଇ
କେଉଁ ରାଇଜର କଥା ସେ ବଖାଣେ
ଶୁଣି କେ ନୋହିବ ବାଇ ॥
କୁଳ ଭୂଆଷୁଣୀ ମହତ ଲୁଟଇ
କେଳ ମାପମୂଳେ ଥାଇ
ଗୌର ଦ୍ୱିଜ ବୋଲେ ତୁନ ହୋ ତା କଥା
କହନା ଆଉ ଶୁଣାଇ ।୬।

---

[ଶଙ୍ଖେ ଏକୋବନ]

ନନ୍ଦକୁଳକଳାନିଧିକ

(ନନ୍ଦସୁତ ମୋର ଜୀବନ ବୃତ୍ତ)

ନନ୍ଦକୁଳକଳାନିଧିକ
ତୋ ଶତ୍ରୁ ସମ୍ପତ୍ତି ଦେଲୁ କ ବକ ॥
କହିଥିଲ ଆଗରୁ ମୁହିଁ
ତାହା ଚେତ ପାଉଲୁ ନାହିଁ
(ଗୋ ଚନ୍ଦ୍ରମାମୁହିଁ !)
କେତେ ଅପବାଦ ହାଟ ବସିଯିବ
ଏ ବ୍ରଜ ବଜାରେ ଭରବଧିକ । ୧ ।

ଗୋପେ ଛନ୍ତି ଯେତେ ଗୁଆଳୀ
ସଚୀ ପତିବରଣୀ ବଳୀ
ସବୁଙ୍କର ଜାତି ମଧେତ ହଟାଳ
ସାରଲାଣି ସେହୁ ହଟିଆ ଟିକ । ୨ ।
କାଉଁଶ ମୋହିନୀ ଭେକକ
ଜାଣଇଁ ସେ ଭଳ ଭକ୍ତକ
ଦାଉଁ ଦାଉଁ କର ଗ୍ଲାନି ଚମକାଏ
ବାଉଁଶ ଯନ୍ତର ଖଣ୍ଡିକ ଫୁଙ୍କି ।୩।
ପଡ଼ଲୁ ହତମ ଦଶାରେ
ଆଉ କ ରହିବୁ ସଂସାରେ
ସଢ଼ିଲୁ ନଖୁଏଁ ତୁ ଲୋକହସାରେ
ଅରଜ ବସିଲୁ ଭଲ ସିଦ୍ଧି କ ।୪।
ଗୃଭୁଖ ତୋ ଯିବ କେଣିକ
ଆଗୋ ଜେମାମଣି ଏଣିକ
ବାଉଳୀ ହୋଇ ତା ପଛେ ଗୋଡ଼ାଇବୁ
ହଜାଇ ଧିଆନ ଜ୍ଞାନ ବୁଦ୍ଧି କ ।୫।
ଗୌର ଦ୍ୱିଜ କହେ ମୋ କଥା
ଆଜଠାରୁ ମନେ ରଖିଥା
ତୋ ହୃଦପୁ ବ୍ୟଥା ନୋହିବ ଅନ୍ୟଥା
ଅନୁଭବୁ ବରହ-ବ୍ୟାଧିକ ।୬।

———

[ଶବ୍ଦେ ବାଜନ]

## ଜାଣୁ ଜାଣୁ ଶ୍ରୀମତୀ

( ପାଉପଟ କପଟ ପ୍ରୀତି କର ବୃଥା )

ଜାଣୁ ଜାଣୁ ଶ୍ରୀମତି !
ମନ୍ତ୍ରଶ୍ରେଷ୍ଠାରେ ମତି ବଳାଇଲୁ ତ
ସନ୍ତାପ ସମୀରେ ସମ୍ପାଦିବା ପାଇଁ
କ୍ଷୀଣୋଦରି ! ଖଣି ଖୋଳାଇଲୁ ତ ॥
ପଦେ ମୋତେ ଘନିଲୁ ନାହିଁ
କାଳୀ ହୃଦେ ପଡ଼ିଲୁ ତେଇଁ
ବିଷମ ବିରିଖ ବିଷଜ୍ୱଳା ପାଇଁ
ତା' କପଟ ଖଟେ ତୁଳାଇଲୁ ତ ।୧।
ଜାଣଇ ସେ ବଣିକ ବୁଦ୍ଧି
ଧରି ନବରଙ୍ଗ ନିକଟ
ଭୁ ଭଙ୍ଗୀ ଘଟନେ ଘାଟଦ୍ୱାର ନବ
ଯୌବନ ରତନ ମିଳାଇଲୁ ତ ।୨।
ଇନ୍ଦ୍ର ଜାଲ ବିଦ୍ୟାରେ ପୁଣ
ନନ୍ଦସୁତ ଅତି ନିପୁଣ
ଅନଙ୍ଗ ଭୂତ ଅନ୍ତରରେ ରଖି ତା
ବାକ୍ୟମନ୍ତ୍ରେ ଦେହ କଳାଇଲୁ ତ ।୩।
ତାର ବକ୍ର ଭ୍ରୂଭଙ୍ଗୀଛଟା
ସେ ତ ଅତି ଅନର୍ଥ ଅଠା
ତୋ ଅସି ଖଞ୍ଜନ ପକ୍ଷୀ ଯୁଗଳକୁ
ସାକ୍ଷାତେ ତା ଆଗେ ଖେଳାଇଲୁ ତ ।୪।

କୀର୍ତ୍ତିଦାର ନନ୍ଦନ ! କୀର୍ତ୍ତି
କଲୁ ବ୍ରଜ ମଣ୍ଡଳେ ଖ୍ୟାତି
ଅଦେହ ଦେବତା ବସାଇବା ପାଇଁ
ତୋ ଦେହ ଦେଉଳ ତୋଳାଇଲୁ ତା ।୫।
ତୁ ତ ରଙ୍ଗେ ସୁଜାଣ ହୋଇ
ଛଳେ ତର୍କେ ପାରିଲୁ ନାହିଁ
କୁଞ୍ଜକାନନ କଣ୍ଠୀରବ ଅଗ୍ରତେ
ଗଜଦ୍ୱିରଦକୁ ମିଳାଇଲୁ ତ ।୬।
ଗୌର ଦ୍ୱିଜ ସଦେ ସାଧିକା
ଅର୍ଜିଲୁ ଏ ଲଭ ଅଧିକା
ଧରାଧରଧରକରକମଳରେ
ଘନ ପୀନସ୍ତନ ଦଳାଇଲୁ ତ ।୭।



[ଶବ୍ଦ ତେପନ]

## ନନ୍ଦନେନ୍ଦ୍ରଗନ୍ଧ

( ସ୍ୱର ତୋଡ଼ିପରଜ ତାଳ ଆଠତାଳୀ )

ରେ କିଶୋର ! ତୋ ବୁଦ୍ଧି ବିବେକ ଦୂର
ନନ୍ଦ ନେଶ ବୃନ୍ଦ ଶୋଭା ସିନ୍ଧୁ ନୀରେ
ଆଜ ତୁ ଗଲୁ କି ବୁଡ଼ି ॥
ଏ ଅତି ସୁଲଭ ଯେ ଦେବ-ଦୁର୍ଲ୍ଲଭ
ସେ ଯେବେ ନେଲେଣି ଜାତି
ଏଣିକି ଅନଙ୍ଗ ରଙ୍ଗ ମହୋତ୍ସବେ
ପୁହାଇବୁ ସୁଖେ ରାତି ।୧।

ତାହାଙ୍କ ପ୍ରଣୟ ଭୁଜେ ବାନ୍ଧିହେଲେ
ଆଦରେ ଜୀବନ ବାନ୍ଧବ !
ସେ କାଳେ ଆମ୍ଭଙ୍କୁ ଲୋଡ଼ିବୁ କ ଆଉ
ମନେ ମୁଁ ହେଉଛୁ ଭବ ।୨।
ପୂର୍ବରେ ତୁ କେଉଁ ପୁଣ୍ୟ କରିଥିଲୁ
କେଉଁ ଦେବତା ମନାଇଁ
ଜାଣି ସେ ସୁକୃତ ହେଲେ ବଶୀଭୂତ
ନାଗରବର କହ୍ନାଇଁ ।୩।
ନବ ଅନୁରାଗେ ପୁଲକିତ ଅଙ୍ଗେ
ଠାରୁଛୁ କାହାକୁ ଅକ୍ଷି
ଲୁଚୁଇଲେ ଧନ ! ମରମ କଥାଟି
ଜଣାପଡ଼ି ନ ଯାଏ କି ।୪।
ସାନ୍ଧ୍ୟ କ ବିକାରେ ପ୍ରେମ ଜରଜରେ
ହେଲୁଣି ତ ବାଉଆଣୀ
ତୋ ପ୍ରାଣ ସର୍ବସ୍ୱ ହେଲେଣି ଅବଶ୍ୟ
ମୋହନ ମୁରଲୀପାଣି ।୫।
ଗୌର ଦ୍ୱିଜ ଗିର ଛାଡ଼ନାହିଁ ତୋର
ବାଲ୍ୟଦଶା ଆଜସର
କୃଷ୍ଣଧନେ ଧନୀ ହୋଇ ସଜନୀକି
ଦେବୁ ନାହିଁ କି ଯାଶୋର ।୬।

———

[ଶହେ ଚଉବନ]

## ଆଜନ୍ମ ଦୁଖୀ

(ସମାରଚନ ଆଜତ ଦଶୁନାହିଁ କାଲ ଯତନ ବୃତ୍ତ)

ଆଜନ୍ମ-ସୁଖି !
ସଜ-ଦୁଲ୍ଲଣୀ-ସଜ-ପଙ୍କଜମୁଖି ! ଗୋ । ଘୋଷା ।
ନ ବୁଝି ନ ବୁଝିର ସତେ କି କଲୁ
କି ସାହସେ ଯମୁନା ପାଣି କି ଗଲୁ ଗୋ ।୧।
ବାମନ ହୋଇ ଧନ ! କେଉଁ ପ୍ରସଙ୍ଗେ
କର ବଢ଼ାଇ ଦେଲୁ ଗଗନ ଶୃଙ୍ଗେ ଗୋ ।୨।
ଭୁ ତ ନୂତନା ବାଳୀ ଚତୁସ୍ତମଣି
ରସ ସିନ୍ଧୁ ଲହରୀ ବସିଲୁ ଗଣି ଗୋ ।୩।
ଏ କି ତୋ ବାଇବୁଦ୍ଧି ଅଲ୍ପଲାବର
ଉଚ୍ଛନ୍ନ ହେଲୁ ନଷ୍ଟେ କହେ ଗଉର ଗୋ ।୪।

---

[ଶହେ ପଞ୍ଚାବନ]

## ଝିଙ୍ଗିଚୂଲେ ଆଖି ଲଖିଲେ କି

ଆଜନମ ସୁଖୀ ପଙ୍କଜମୁଖି ରେ
ଶିଖିଚୂଲେ ଆଖି ଲଖି ଲୁ କି । ଘୋଷା ।
ଚମକି ଉଠୁଛୁ ରହି ଥକ ଥକ
ଶୁଖି ଶୁଖି ତନୁ ଯାଉଛି କାହିଁକି
ଦୁଃଖୀଧନ ଫେଡ଼ କହିବୁ ନାହିଁକି
ଅଗଇ ଲାଗିଛୁ ତୋ ଘୁଞ୍ଚକି ।୧।

ଲୁକ ଲୁକ ଗୁନ ଆଖି ଦେଖିଲୁନ
ଫୁଙ୍କିବା ମୁରଲୀ ଶୁଣା ଶିଖିଲୁ କ
ମୁଁ କି ସ୍ୱପନ ଦେଖୁଛି ରେ ସଖି
ଟୁଙ୍କି ହେଉ କିପାଁ ଏପରି କ ।୨।
କାଳିଆ ନାଗର ଅଧରାମୃତ କ
ଢୋକିଦେଲୁ ତୁ କ ହୋଇ କଉତୁକୀ
ପ୍ରେମ ହଳାହଳ ଶିଖିଶିଖା ଠେକ
ବୁକୁ ଫୁଲି ଜାଳି ଦେଉଛି କ ।୩।
ଜଡ଼ିବୁଟି ଯନ୍ତ୍ରମନ୍ତ୍ର ତ ଏଥିକ
ନାହିଁ କରୁ ଆଉ ଖୋଜିଲେ ପୋଥିକ
ଗୌର ଦ୍ୱିଜ ଭଣେ ନାଗରସାଥିକ
ଅଉଷଧି ଜାଣେ ମୁଁ ଏତିକ ।୪।

———

[ଶବ୍ଦ ଛପନ]

ନିଷେଧି ଥିଲ ପରା ପହିଲୁ ରେ

( ରାଗ କାମୋଦୀ ତାଳ ଏକତାଳୀ )

ନିଷେଧି ଥିଲ ପରା ପହିଲୁ ରେ
କାହିଁକି ତୁ ଚେତିକି ଗୁହିଁଲୁ ରେ
ସେ ଯମୁନା ଅପୂନ ଜଗୁଆଳି ନପୂନ
କୁନ୍ତଳୁ ବସ୍ତ୍ର ଯା ପଠାଇଲୁ ରେ ।।
ବିଷମ ବ୍ୟାଧି ଏବେ ଯୋଡିଗଲାଣି କେତେ
ନ ଭୋଗିବାର ଦଶା ପାଇଲୁ ରେ

କଳା ନାଗର ବିଷ   ଘାରିବ ଅହର୍ନିଶ
ପୀୟୂଷ ମଣି ଯାହା ଖାଇଲୁ ରେ ।୧।

କେଉଁ ସାହସେ ଧନ   ସମର୍ପି ଦେଲୁ ମନ
ଯୁବତୀ ସଂସାରେ କି ରହିଲ ରେ
ଏଥିକି ରସନିଧି   ନାହିଁ ତ ମହୌଷଧି
ଜାଣି ଦୁଃସହ ତାପ ସହିଲୁ ରେ ।୨।

ତୋର ଏ ଅଭିଳାଷ   ଥିଲା ଯେବେ ବାଳିଶ
ଆଗରୁ ମୋତେ ଯା ନ କହିଲୁ ରେ
କି ବାଇଆଣୀ ସତି   ଆଚରିଲୁ ଶ୍ରୀମତି
ସ୍ଥୈର୍ଯ୍ୟ ତ ନିନ୍ଦାବୋଝ ବୋହିଲୁ ରେ ।୩।

ଅସରନ୍ତ ଯୌବନ   ହେବ କି ଏ ନିଦାନ
କେଉଁ କୂଳରେ ହାଦେ ନୋହିଲୁ ରେ
ଗାରିମା ଗିରିଧାରୀ   ସାରି ଦେଇଛି ଠାରି
ବିରହାନଳେ ତନୁ ଦହିଲୁ ରେ ।୪।

ଦ୍ୱିଜ ଗଉର ବୋଲେ   ଶ୍ୟାମଶୋଭା ସଲିଳେ
ନ ବିହରି ତ ଅବଗାହିଲୁ ରେ
ଏଣିକି ବିମ୍ବାଧରି !   ରହ କର୍ମ ଆଦରି
କେ କି କରିବ ଆପେ ଭୁଲାଇଲୁ ରେ ।୫।

---

[ଶବ୍ଦେ ସଦ୍ଭାବନ]

## କାଳିଆ ନାଗ

( ରାଗ ଦେଶମଣ୍ଡଣ ତାଳ ଆଠତାଳୀ )

ରେ କଣେ ରମଣୀ ! କୌତୁକ ରଙ୍ଗେ
ଖେଳ ନା କାଳିଆ ନାଗର ସଙ୍ଗେ ରେ । ଘୋଷା ।
ବଡ଼ ଅବଶ୍ୱାସୀ ଅଟଇ ସେହି
କେବେ ତୁ ହୁଅନା ତା ଠାରେ ସ୍ନେହୀ ରେ ।୧।
ନକର କର କହୁଛି ନଗୀନା
ଆଖରକୁ ସର ଯିବୁଟି ସିନା ରେ ।୨।
ବଳ ପଡ଼ିଲେ ହୃଦୟ ବେଦନା
କଳ ନ ପାରବୁ କୁନ୍ଦରଦନା ରେ ।୩।
ଘାର ପକାଇବ ତା ବିଷଜ୍ୱାଳା
କାଳିନ୍ଦୀ ଝରକୁ ଶଓ୍ର ନ ବଳା ରେ ।୪।
ଭରସ ନା ତେଣେ ନମିଷେ କ୍ଷଣେ
ଭୂସୁର ଗଉର ଚରଣ ଭଣେ ରେ ।୫।



# ଶୁଦ୍ଧିପତ୍ର

ଏ ଶୁଦ୍ଧି **ପତ୍ର** ଅନୁସାରେ ବହିକୁ ଆଗ ସଂଶୋଧନକରି ପାଠକରିବେ

| ପୃଷ୍ଠା | ଗୀତପଂକ୍ତି | ଭ୍ରମ | ସଂଶୋଧନ |
|---|---|---|---|
| ୧ | ୨ | ବେଦର ଗାର | ବେଦର ସାର |
| ୫ | ୬ | ଭକ୍ତପଢ଼ରେ | ଭକ୍ତପକ୍ଷରେ |
| ୬ | ୧୧ | ଘନନାଥ | ଧନନାଥ |
| ୧୦ | ୬ | ଅହଂନ୍ତା | ଅହନ୍ତା |
| | ୧୦ | ଆର୍ତ୍ତୀଆର୍ତ୍ତି | ଆର୍ତ୍ତିଆର୍ତ୍ତି |
| ୧୧ | ୯ | କର ଡାଙ୍କ | କରଡାଙ୍କ |
| ୧୪ | ୧୪ | ମନେହର | ମନୋହର |
| ୧୯ | ୧ | ପାଇବ | ପାଶବ |
| ୨୩ | ୧୬ | ପଦରଣ | ପଦ୍ମରଣ |
| ୨୭ | ୧୬ | ଠେକାଲୋକ | ଠେକ ଲୋକ |
| ୨୯ | ୧୦ | ସେଜେ | ସେ ଯେ |
| | ୧୫ | ଗୁଣ୍ଡିବୃଘରେ | ଗୁଣ୍ଡି ବୃଘରେ |
| ୩୫ | ୪ | ନଳୀନ | ନଳିନ |
| ୪୨ | ୬ | ଛିନ | ଚିନ |
| ୪୩ | ୫ | ନଶ | ନଶ୍ରୀ |
| ୪୪ | ୬ | ବାସନା | ବସ ନା |
| ୪୭ | ୧୧ | ହରନାମେ ଗଙ୍ଗ | ହରିନାମେ ଗର୍ଜ |
| ୫୭ | ୧୦ | ଦ୍ୱଜର | ଦ୍ୱ ଜର |
| ୫୮ | ୨ | ଅଚ୍ଛେଦକ | ଅଚ୍ଛେଦବ |
| ୬୭ | ୧୨ | ଯୁଗଳପଦେ | ଯୁଗଳପଦ |
| ୬୮ | — | ଯଶୋଦା ଭାଗ୍ୟବନ୍ତୀ | ଭାଗ୍ୟବନ୍ତୀ ଯଶୋଦା |
| ୮୬ | ୮ | ଷିର | କ୍ଷୀର |

| | | | |
|---|---|---|---|
| ୯୨ | ୧୧ | କକକୁଟ | କୁକ୍‌କୁଟ |
| ୧୦୫ | ୫ | ଓୃଷ୍ଣ | ତୃଷ୍ଣ |
| ୧୦୬ | ୨ | ଅନ୍ତୁପୁର | ଅନ୍ତପୁର |
| | ୪ | କୁସନ | କୁସୁମ |
| ୧୨୨ | ୮ | ନଟନଟବର | ନବନଟବର |
| ୧୨୫ | ୯ | ତ୍ରି ରଙ୍ଗ | ତ୍ରିଭଙ୍ଗ |
| ୧୨୭ | ୧୯ | ବଛଜିତ | ବସ୍ତ୍ରଜିତ |
| ୧୪୬ | ୨ | ସଖି ! ଘନଶ୍ୟାମ | ସଖି ! ଶ୍ୟାମଘନ |
| | | ମୁରଲୀ | ମୁରଲୀ ସୁସ୍ୱରେ |
| ୧୪୮ | ୧୧ | ନଥର | ନଜର |
| ୧୫୬ | ୧୨ | ଭ୍ରମର | ଭ୍ରମଇ |
| ୧୬୭ | ୧୯ | ଖାଇ | ଛଇ |
| ୧୬୮ | ୨ | ଛାପଇଲୁ | ଛା ପାଲରୁ |



